# ଜୀବନ-ଗୀତି


ରଚନା— ଜନଗଣ

ସଂଗ୍ରହ— ଶ୍ରୀ ଆର୍ତ୍ତବନ୍ଧୁ ମିଶ୍ର

ଶ୍ରୀ ଅକ୍ରୂର ଚନ୍ଦ୍ର ଓ ଅନ୍ୟାନ୍ୟ ବନ୍ଧୁମାନେ

ସଂପାଦନା—

ପ୍ରଫେସର ଆର୍ତ୍ତବନ୍ଧୁ ମିଶ୍ର

ଜ୍ୟୋତି ବିହାର


ଉତ୍ସର୍ଗ— ଗଣଦେବତାଙ୍କ ଉଦ୍ଦେଶ୍ୟରେ


ପ୍ରକାଶକ— ଶ୍ରୀ ଜଗଦୀଶ ପ୍ରଧାନ

ସଂପାଦକ— "ଗାଉଁଲି ବଟୁର"

ଖଡଆଳ-୭୬୬୧୦୭

ମୁଦ୍ରଣ— ଖଡଆଳ ଛାପାଖାନା ଖଡଆଳ-୭୬୬୧୦୭

—୧୦୦୦ - ତା: ୧୫-୨-୮୪

# ମୁଖବନ୍ଧ

ଜଙ୍ଗଲରୁ ଗଛ କମିଯାଉଛି । ନଦୀ ଓ ବନ୍ଧ କ୍ରମେ କ୍ରମେ ପୋତି ହୋଇ ଆସୁଛି । କଳକାରଖାନା ଯୋଗୁଁ ଜଳବାୟୁ ଦୂଷିତ ହେଉଛି । ମୋଟା ମୋଟି ଭବରେ ସଂପ୍ରତି ପୃଥିବୀର ପରିବେଶ ନିର୍ମଳତା ହରଇ ବସୁଛି । ଯାହା ତୁଣ୍ଡରୁ ଶୁଣିବେ ଏକା କଥା । କିପରି ଚଳିହେବ ? ବଞ୍ଚିବା କେମିତି ? ଅଦିନିଆ ବର୍ଷା ଶୀତ ଓ ରୌଦ୍ରତାପରେ ସମସ୍ତେ ଅତିଷ୍ଠ । ପ୍ରକୃତି ରାଜ୍ୟରେ ଏ ଅସ୍ୱାଭବିତକା କାହିଁକି ? ପରିବେଶ ବିଜ୍ଞାନୀମାନେ, ଲୋକଙ୍କ ଭିତରେ ଏହାର କାରଣ ଗୁଡକ ଦର୍ଶାଇ ନିରାକରଣ ନିମିତ୍ତ ତତ୍ପର ହେବାପାଇଁ ଯତପରେନାସ୍ତି ଚେଷ୍ଟା କରୁଅଛନ୍ତି । କିନ୍ତୁ ଏଥିପାଇଁ ସାମୁହିକ ସହଯୋଗ ତ କେବଳ ନୁହେଁ, ସମୁହିକ କର୍ତ୍ତବ୍ୟ ଭବରେ ଗ୍ରହଣ କରି ପ୍ରତ୍ୟେକେ ପ୍ରକୃତିର ମୌଳିକତା ଯେପରି ନଷ୍ଟ ନ ହୁଏ କିମ୍ବା ନଷ୍ଟ ପ୍ରାୟ ଅବସ୍ଥାକୁ ସୁଧାରି ନିଆଯାଇ ପାରେ ସେଥି ପ୍ରତି ସତତ ଯତ୍ନବାନ ହେବା ନିତାନ୍ତ ଆବଶ୍ୟକ । ଏ ଦିଗରେ ସରକାର ଉତ୍ସାହିତ କରୁଥିଲେ ମଧ୍ୟ ଗଛ ଲଗାଇବା ବାହାନାରେ କଟାଡାଳ ପୋତି ଅଜସ୍ର ଅର୍ଥ ତୋଷରପାତ ହେଉଥିବା କିମ୍ବା ଉତ୍କୋଚ ଦେଇ କର୍ତ୍ତୃପକ୍ଷଙ୍କ ଠାରୁ ଖଣିପଟା ନେଇ ପ୍ରାକୃତିକ ପରିବେଶ ନଷ୍ଟ କରଯାଉଥିବାର ଦୃଷ୍ଟାନ୍ତମାନ ବିରଳ ନୁହେଁ । ହେଲେ କାହାରିକୁ ଦୋଷ ଦେଇ ନୀରବ ରହିବା କିମ୍ବା ପ୍ରତି-କ୍ରୀୟାଶୀଳ ହୋଇ କିଛି ଅନିଷ୍ଟ କରିବା ପୂର୍ବରୁ ନିଜ ପରିବେଷ୍ଟନୀ ସ୍ଥିତ 'ପରିବେଶକୁ' ନଷ୍ଟ ହେବାକୁ ନ ଦେବା ହେଉଛି ସମସ୍ତଙ୍କର ଗୁରୁ ଦାୟିତ୍ୱ ।

ବନ୍ଧୁ ଶ୍ରୀଯୁକ୍ତ ଆର୍ତ୍ତବନ୍ଧୁ ମିଶ୍ରଙ୍କ ଦ୍ୱାର ସଂପାଦିତ "ଜୀବନ ଗୀତି" ସଂକଳନଟି 'ପରିବେଶ' ପ୍ରତି ସାଧାରଣ ଜନତା ସଚେତନ ରହିବା ପାଇଁ ଏକ ଉତ୍କୃଷ୍ଟ ମାଧ୍ୟମ । ଯୁଗେ ଯୁଗେ ସାହିତ୍ୟ ସମାଜକୁ ସୁଧାରେ । ସମାଜ ହୁଏ ଶୃଙ୍ଖଳିତ । ତେଣୁ 'ପରିବେଶ ବିପ୍ଲବ'ର ଜାଗରଣ ପାଇଁ ଏହି ମାଧ୍ୟମଟି ନିଶ୍ଚିତ

ଭବରେ ସହାୟକ ହେବ ଏଥିରେ ସନ୍ଦେହ ନାହିଁ । ସର୍ବୋପରି ସଂକଳନର ପ୍ରାୟ ପ୍ରତ୍ୟେକ ଗୀତ ପ୍ରଚଳିତ ଲୋକଗୀତର 'ଡାଲଖାଇ,' ରସରକେଳି, ଜାମୁଡାଳି ପ୍ରଭୃତି ଗଗରଗିଣୀ ତଥା ଗଣନୃତ୍ୟର ଶୈଳୀ ଅନୁସୃତ ଯାହାକି । ଲୋକ ସାଧାରଣଙ୍କୁ ଅନୁପ୍ରାଣିତ, ପ୍ରଭାବିତ ହେବା ପାଇଁ ଯଥେଷ୍ଟ ସହାୟକ ହେବ ।

ଭରତର ଅନ୍ୟାନ୍ୟ ପ୍ରାନ୍ତରେ 'ଚିପ୍‌କୋ, କେରଳ ଶାସ୍ତ୍ର ସାହିତ୍ୟ ପରିଷଦ' ଏବଂ ବୃକ୍ଷବନ୍ଧୁ ସମାଜ ପ୍ରଭୃତି ଅନୁଷ୍ଠାନଗୁଡକ ଏ ଦିଗରେ ବିଶେଷ ପଦକ୍ଷେପମାନ ନେଉଛନ୍ତି । ସେହି ପରିପ୍ରେକ୍ଷୀରେ ଶ୍ରୀଯୁକ୍ତ ମିଶ୍ରଙ୍କ ଏ ସାଧୁଉଦ୍ୟମ ଯେ ଜନତାଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ତଥାକଥିତ ବିଜ୍ଞ ବୋଲାଉ ଥିବା ସମାଜଦ୍ରୋହୀମାନଙ୍କୁ ଉଚିତ ଶିକ୍ଷା ଦେବ ବୋଲି ପୂର୍ଣ୍ଣ ବିଶ୍ୱାସ ରହିଛି । ହେଲେ ସବୁର ମୂଳରେ ରହିଲା ଲୋକମାନଙ୍କର ଦାୟିତ୍ୱ ବୋଧ । ସେ ଯାହା ହେଉନା କାହିଁକି ଏହି ସଂକଳନଟି ଓଡିଶାର ପ୍ରତ୍ୟେକ ଅଞ୍ଚଳ ଏପରିକି ପ୍ରତ୍ୟେକ ଗ୍ରାମକୁ ପହଞ୍ଚି ପାରିଲେ ସଂଗ୍ରାହକଙ୍କ ଶ୍ରମ ସାର୍ଥକ ହେବା ସଙ୍ଗେସଙ୍ଗେ ଭବିଷ୍ୟତର ଆତଙ୍କରୁ 'ପରିବେଶ'କୁ କିଛିଟା ରକ୍ଷା କରାଯାଇ ପାରିବ ବୋଲି ଆଶା ।

ଜ୍ୟୋତିବିହାର ବୁର୍ଲା
ତା:. ୨୯-୫-୮୩

ସ୍ୱା:- କମାଣ୍ଡ ଚରଣ ପଣ୍ଡା
ତା: ୨୨-୫-୮୩

## ସଂପାଦକଙ୍କ କଳକଥା

କଥାରେ ଅଛି 'ମନ ଫୁଲ୍ଲଣିଆ ଗୀତ ଗାଏ' । ସମାଜରେ ଯେତେ ଗୀତ ବୋଲା ଯାଇଛି, ଯାଉଛି ଓ ଯିବ ସେ ସବୁ କ'ଣ ଫୁଲ୍ଲଣିଆମନର ଗୀତ ? ଲୋକ ମନର ଅନ୍ୱେଷଣ ଦୁଃଖ, ସୁଖ ବା ରାଗକୁ ନେଇ ମନ ଫୁଲି ଉଠିବା ସ୍ୱାଭବିକ । ଲୋକ ବାଣୀରେ ଏହାର ଅନେକ ଦୃଷ୍ଟାନ୍ତ ରହିଛି ।

ସାହିତ୍ୟିକମାନେ କହନ୍ତି, ଲୋକମନର ଚିନ୍ତା ଓ ଆବେଗ ହେତୁ ସଂଗୀତର ସୃଷ୍ଟି । ଏ ପୁସ୍ତିକାର ଗୀତ ଗୁଡ଼ିକ ଏ କଥାର ପ୍ରମାଣ ଦେଉଛନ୍ତି କି ନାହିଁ ତାହା ଲୋକେ ବିଚାର କରିବେ ।

ଗଣସାହିତ୍ୟ ବିଶେଷଜ୍ଞ କହନ୍ତି, ଯେଉଁ ସାହିତ୍ୟ ପଢ଼ିବାକୁ ବା ଶୁଣିବାକୁ ଗଣ ନିଜର ଗରଜ ମନେ କରେ ତାହାହିଁ ଗଣ ସାହିତ୍ୟ" । ଏହା ପ୍ରଚ୍ଛର ଧର୍ମୀ ।

ସାହିତ୍ୟିକଙ୍କ ମତରେ "ସଂଗୀତର ସ୍ୱର, ନୃତ୍ୟର ଛନ୍ଦ, କବିତାର ଝଙ୍କାର, ପ୍ରବନ୍ଧର ଚିନ୍ତନ, ଉପନ୍ୟାସର ରୋମାଞ୍ଚ, ନାଟକର ପ୍ରତିବିମ୍ବ ଓ ଚିତ୍ରର ରଙ୍ଗରେ ମାନବାତ୍ମାର ଅନ୍ୱେଷଣ ପ୍ରକାଶ ପାଇଲେ; ନିମ୍ନଗାମୀ ରାଜନୀତି ଓ ଦୋଦୁଲ୍ୟମାନ ଶାସନ ତନ୍ତ୍ର ତଥା ସାମାଜିକ ରୁଚି ଓ ନୀତିର ମାଧ୍ୟାକର୍ଷଣ କଦାପି ତାହା ଅଗ୍ରାହ୍ୟ କରିପାରିବ ନାହିଁ" ।

ପିଲାଦିନେ ବୁଢ଼ୀମା କାହାଣୀରୁ ଶୁଣିଥିଲି ଯେ ଜଣେ ଲେଖକ ଲୋକ ମନରେ କୁ ପ୍ରଭାବ ପକାଇ ଥିବାରୁ ସେ ପ୍ରଭାବ ସମାଜରେ ଥିବା ପର୍ଯ୍ୟନ୍ତ ଯମ ଦରବାରର ଆଦେଶରେ ତାତିଲା ତେଲରେ ସିଝିଥିଲେ । ମୋ ପାଇଁ ତଥା ଗୀତ ଗୁଡ଼ିକର ରଚୟିତା ମାନଙ୍କ ପାଇଁ ଏ ଦଣ୍ଡ ପ୍ରଯୁଜ୍ୟ କି ନା ତା ଗଣଦେବତାଙ୍କ ବିଚାର ଯୋଗ୍ୟ । ସଂପାଦନା ଗତ ତ୍ରୁଟି ପାଇଁ ମୋତେ ସେମାନେ କ୍ଷମା ଦିଅନ୍ତୁ ।

ଆମ ମୁଖ୍ୟମନ୍ତ୍ରୀ ବଳୁ ଗମ୍ଭୀର ସ୍ୱରରେ ଘୋଷଣା କରିଛନ୍ତି 'କବି, ଲେଖକ ଓ ସାହିତ୍ୟିକମାନେ ଶାସନ ତଥା ସମାଜର ନମସ୍ୟ । ଏ ପୁସ୍ତିକାର କବିମାନଙ୍କ ପ୍ରତି ଏ ଉକ୍ତି କେତେ ଦୂର ପ୍ରଯୁଜ୍ୟ ତାର ବିଚାର ସମୟ କରିବ । ଏ ପ୍ରକାଶନରେ ସାହାଯ୍ୟ କରିଥିବାରୁ 'ପ୍ରଜାତନ୍ତ୍ର'ର ସଂପାଦକ, ବନ୍ଧୁ ଶ୍ରୀ ନିମାଇଁ ଚରଣ ପଣ୍ଡା, ଅକ୍ରୁର ରଥ, ମାୟାଧର ରାଜହଂସ ଓ ଅନ୍ୟାନ୍ୟମାନେ ଧନ୍ୟବାଦାର୍ହ ।

ସହଧର୍ମିଣୀଙ୍କ ସାହାଯ୍ୟ ଏଥିପାଇଁ ସର୍ବାଧିକ ।

ବିନୀତ
ସଂକଳକ

# ସୂଚୀପତ୍ର

## ଜଗନ୍ନାଥ ଜଣାଣ

( କୋଠ ଭୋଗଖିଆ ....... ବୃତେ )

ଜଗତ ଜରତା ହେ ଦାରୁ ଦେବତା
ଦିଅ ହେ ସାହସ ନରେ
ପରିବେଷ୍ଟି ଆମ ଉତ୍କଳ ଜଣ
ବିପନ୍ନ ଗରିବ ମରେ
ବଡ ଆଖିକୁ କି ଦିଶୁନାହିଁ ପ୍ରଭୋ
ଶାସନେ ଶୋଷଣ ଚଳେ । (୧)
କୋଟି କୋଟି ଟଙ୍କା ଖରଚ ହେଉଛି
ବଢ଼ଇ ଶିଳ୍ପ ନଗରୀ
ଖଣି ଯୋଜନା ବନ୍ଧ ଗଢ଼ା ବଣ ହାଣି
ନଈରେ ପଶଇ ଚାଲି,
ବରଷା ପାଣିରେ ବାଟ ପୋତି ହେଲା
ଘର କ୍ଷେତ ନିଏ ଠେଲି । (୨)
ବରଷୁ ବରଷ ବେଶୀ ହୁଏ ବଢ଼ି
ଗାଁ ସହର ଭାସଇ
ଉଳକା ଲୁହିଁଛି ମାରେ ମହାପାତ୍ର
ପେଟକୁ ତ ଦାନା ନାହିଁ,
ଭେଳିକି ଦେଖାଇ ଠକ ଖାଉଛନ୍ତି
ନୀରବେ ରହିଛ ଲୁହିଁ । (୩)
ଖାଉଆଙ୍କ ହାତେ ଦେଇଛ ଯୋଜନା
ମାରୁଆଙ୍କ ସୁଖ ପାଇଁ
କଙ୍କଡ଼ାକୁ ଗୋଳିପାଣି ସୁହାଉଛି
ଗରିବ ମରଇ ଧାଇଁ

ଗରିବ ମାରଣ ଚଳଇ ଜଗତେ
ଆଖିକୁ କି ଦିଶୁ ନାହିଁ । (୪)
ହଜାରେ ଜିନିଷ ବଣୁ ପାଇ ଦୀନ
ଚଳାଇଥିଲୁ ଜୀବନ
ସ୍ୱାଧୀନତା ହେଲା ବ'ଣ ଉଜୁଡ଼ିଲା
ବନବାସୀ ହୀନମାନ
ବଣ ବିନା କୁହ ଧରିବ କେ ଦେହ
ନ ପାଇ ପାଣି ପବନ । (୫)
ବଣ ଖେଞାକୁ ଆସି ସୁଖବାସୀ
ସହେ ଗ୍ରେରଙ୍କ ଗଞ୍ଜଣା
ବଡ ଲୋକ ହସେ ଚୋରଙ୍କ ସାହସେ
ଗରିବଙ୍କ ବୁଦ୍ଧି ବଣା
ଦୀନନାଥ ହୋଇ ବସିଅଛ ଗ୍ୱହିଁ
ଦୀନେ କିଂପା ଦୟା ଉଣା । (୬)
ପଞ୍ଚାଅଣି ଭାଗ ଗରିବ ଜଗତେ
କର ତାଙ୍କୁ ଏକ ମନ
କେଉଁ ଶକତି ବା ଭାଙ୍ଗି ପାରେ ତା
ଗଢ଼ା ହେଲେ ସଂଗଠନ
ତବ ଶ୍ରୀପୟରେ ମାଗୁଣି ଏତିକି
ଦିଅ ହେ ନବ ଜୀବନ । (୭)
ଶିଖାଅ ଏକତା ହେ ଗଣ ଦେବତା,
ବଡ ଆଖି ତବ ଦିଅ
ଖୋଲି ସେ ନୟନ ଜଗତ ଦର୍ଶନ
ଫୁଟାଇବୁ ପ୍ରେମ ଫୁଅ
ନିଜ ଅଧିକାର କର୍ତ୍ତବ୍ୟ ପାଇଁ କି
ଅନ୍ତରେ ସାହସ ଦିଅ । (୮)
ଜୀବନ ସଂଗ୍ରାମେ ଝାସ ଦେବୁ ଆମେ
ଶାନ୍ତିର ବାନା ଉଡାଇ
ମିଳିମିଶି ଚଳି ଶୋଷଣକୁ ଟାଳି
ପ୍ରେମର ସଂଗୀତ ଗାଇ

ତବ ପ୍ରେମ ସ୍ରୋତେ ଭସାଇ ଜଗତ
ସମାଜୁ ଭେଦ ଉଠାଇ । (୯
ଷାଠିଏ ପଉଟି ଭେଗ ଖାଇ ପ୍ରଭେ
ଗମ୍ଭୀରରେ ଅଛ ଶୋଇ
କୃପା ନେତ୍ର ଖୋଲି ଦେଖ ଏ ଗରିବ
ମରଇ ପରାଣ ଥାଇ
ଧଳା କଳା ଘୋଡ଼ା ଚଢ଼ିଆସ ପ୍ରଭେ
ଗରୀବ ଏକତା ପାଇଁ । (୧୦

—୦—

ଜୀବନ ବାବୀ    ୧୯୮୫

## ଗଜ ଜଣାଣ

ଏଇ ଡୋଢ଼ିରେ ସମସ୍ତେ ତ ଗଜ
ଏକ ଆରେକର ପ୍ରତିଦ୍ୱନ୍ଦୀ,
ସମସ୍ୟା ବହୁତ ଶକ୍ତି ଅପଚୟ
ନିଜସ୍ୱାର୍ଥ ପାଇଁ ହୁଡ଼ାହୁଡ଼ ।
ରକ୍ଷକ ସାଜନ୍ତ ଭକ୍ଷକ ଆଜି
ଘାତକ ହୁଅନ୍ତ ସେ ପ୍ରିୟବନ୍ଧୁ
ଛଳନା ଚତୁରୀ କେଳିକି ଚଳାଅ
ଏକା ତୁମେ ସାହା ଦୀନବନ୍ଧୁ
ଗଜ ଉଦ୍ଧାରଣ ବାନା ଉଡ଼େ ପ୍ରଭୁ
ଭକ୍ଷକ ସ୍ୱାଦଙ୍କୁ ଦେଖ ଥରେ
ଅଜ୍ଞତା, ଭଣ୍ଡାମୀ ଆଳସ୍ୟ ନାଶନେ
ଜ୍ଞାନ ସୁଦର୍ଶନ ପେଶ ଖରେ ।

—୦—

ଡଃ ବିକ୍ରମ କେଶରୀ ସେନାପତି

## ବନ୍ଦେମାତରମ୍ ବନ୍ଦନା

ଶ୍ରୀ ମଧୁସୂଦନ ଦେବତା
ଅଞ୍ଚଳ ମହାବିଦ୍ୟାଳୟ, ପଦ୍ମପୁର

ସ୍ୱାଧୀନ ଦେଶର ସନ୍ତାନ ଆମେରେ
ଆମର ଗୋଟିଏ ଜାତି,
ଏକ ପରିବାର ଯେନେନ୍ଦ୍ର ପରଶେ
ଆସରେ ଉଠିବା ମାତି । ୦ ।

ଭାରତ ଦେଶରେ ଜନମ ଆମର
ସିଏତ ପୂଜ୍ୟ ଜନନୀ,
ସେବିବା ତା ପାଦ ଭକତି କୁସୁମ
ଦେଇ ଦିବସ ରଜନୀ,
ଗାଇବା ଆସରେ ତାର ଜୟଗାନ
ଜଗିଣ ତା ବକ୍ଷେ ନିତି । ୧ ।

ଆମ ଏ ଦେଶରେ ଗ୍ରଲେ ସବୁଆଡେ
ଆଜି ନାଞ୍ଚ ଜଳିଗୋଳ,
ଘଉଡାଇ ଦେବା ଆସରେ ସରବେ
ହୋଇଣ ଏକାଠି ମୂଳ,
ଏଣିପାଇଁ ଆମ ଜନମ ଭୂଇଁର
ହୋଇଲାଣି ଅବନତି । ୨ ।

ଅତୀତ କାଳରେ ଜାତ୍ରୀ ଗ୍ରଗ୍ରୀ
କେତେ କେତେ ବୀରଗଣ,
ଇଂରେଜ କବଳୁ ଅହିଂସା ନୀତିରେ
ଦେଶକୁ କଲେ ସ୍ୱାଧୀନ,
ତାଙ୍କରି ସାହସେ ହୋଇବା ସାହସୀ
ନାଶିବା ଦେଶ ବିପତ୍ତି । ୩ ।

ଆସରେ ଶପଥ କରିବା ସରବେ
ତ୍ରିରଙ୍ଗ ପତାକା ତଳେ,

ଅନ୍ୟାୟ ଦେଶକୁ ଦେବା ଘଉଡାଇ
ଏକତା ନୀତିର ବଳେ,
ତେବେ ସିନା ଆମ ଭରତ ଦେଶରେ
ଶାନ୍ତିର ବତୀ ।୪।
ସ୍ୱାଧୀନ ଦେଶର..........

ସମାପ୍ତ

## ବୁଦ୍ଧିଜୀବୀଙ୍କୁ

ଆସୁଅଛି ଦିନ ଅଚିନ୍ତା ବିଦ୍ୱାନ    ଅଛନ୍ତି ଏ ଦେଶେ ଯେତେ
ପଚାରିବେ ତାଙ୍କୁ ସାଧାରଣ ଲୋକେ    କି କର୍ମ କରୁଛ ସତେ ।
ଦେଶ ଓ ଜାତିର ପ୍ରଗତି ପ୍ରଦୀପ    ଲିଭିବାକୁ ଯିବା ବେଳେ
ହଜି ଯାଇଅଛି କେତେ ସ୍ୱପ୍ନେ ଆହା    ଜୀବନ ବ୍ୟସନ ଖେଳେ ।
କିଏ ବା ସମାଜେ ବୁଝୁଅଛି ତୁମ    ନିଷ୍ଫଳ ଜ୍ଞାନ ବିବାଦ
ଶୂନ୍ୟ ତୁମର ଚିନ୍ତା ଗଭୀର    ଅସଫଳ ବିଦ୍ୟା ଦ୍ୱନ୍ଦ ।
କାହା ମନେ ଅଛି ଖ୍ୟାତିର ବା ତୁମ    ଅର୍ଥହୀନ ବିଦ୍ୟା ପାଇଁ
ପଚାରେ କିଏ ସେ ତୁମକୁ ପଡିଏ    ବିଜ୍ଞାନ ସଂସ୍କୃତି ନେଇ ।
ଜଳୁଅଛି ତୁମ ମନ ମଧ୍ୟେ ଯେବେ    ଅମ୍ଳ ବିରାଗର ହୁଇ
ଭୀରୁପରି ତୁମେ ମନେ ମନେ ମର    ଦେଖୁଛି ବା କିଏ ଯାଇ ।
ଉଦ୍ଭଟ ତୁମ୍ଭ ଯୌକ୍ତିକତା ଯାହା    ମିଥ୍ୟାରୁ ହୁଅଇ ନିଆ
ବୁଝୁଥାଅ ତୁମେ ନିଜ ପାଠ କିଏ    ପଢୁଛି ଆସିବ କିଆଁ ।
ତୁମ ପାଇଁ ଯିଏ ବୋହି ଆଣି ଦିଏ    ବାସନା ଚାଉଳ ମୁଣ୍ଡେ
ବୁଣି ଦିଏ ଯିଏ ତୁମ ପିନ୍ଧା ଲୁଗା    ଜଗେ ତମ ଘର ଦାଣ୍ଡେ ।
ପୋଛି ଦିଏ ଯିଏ ଗୁହାଳ ତୁମର    କୁକୁର ଗାଧୋଇ ଦିଏ
କାଟିଦିଏ ଯିଏ ତୁମ ଲୁଗାପଟା    ବାସନ ତୁମର ଧୁଏ ।
ଚଳାଏ ଯେ ଆସି ତୁମର ମଟର    ବଗିଚାରେ ମାଟି ହାଣେ
ଆସୁଅଛି ବେଳ ତାଙ୍କରି ଭିତରୁ    ବାହାରି ଆସିବ ଜଣେ ।
ପଢନାହିଁ ସିନା ତୁମ ଲେଖା ବହି    ନ ଗାଏ ତୁମ କବିତା
ବୁଝୁନାହିଁ ତୁମ ବଡ ବଡ କଥା    କଉଣଜ "ନାଲିଫିତା"

ପଚାରିବ ସିଏ ମରମ କଥାଏ  କହ ବୁଦ୍ଧିମାନ ଭଲ
ମରୁଅଛୁ ଆମେ ଜୀବନ ସଂଗ୍ରାମେ  କି କରିଛ ଆମ ପାଇଁ ?
କରିଅଛୁ ଆମେ ଆସି ତୁମ ସେବା  ନିଜ ସମସ୍ୟା ପାଶୋରି
ଆମ ସେବା ନାମେ ନେଉଛ ଦରମା  କରିଛ ବଡ ଚାକିରୀ ।
ସେତେବେଳେ ତୁମ ଜ୍ଞାନର ମହତ୍ତ୍ୱ  ପଡିଯିବ ଭଲ ଜଣା
ଆସିବ ଅସଲ ପରୀକ୍ଷାର ବେଳ  ବୁଦ୍ଧି ହୋଇଯିବ ବଣା ।
ବୁଦ୍ଧିଜୀବୀ ବୋଲି କରେ ଅନୁରୋଧ  ବେଳୁ ହୁଅ ହୁସିଆର
ମାଡ଼ିଆସୁଅଛି ବିପ୍ଳବର ବାଆ  ସଜାଡ ନିଅ ଛପର ।

( 'ଡଗର'ରେ ପ୍ରକାଶିତ)



# ବଣ ଗୀତ

ଜୀବନବାଦୀ

ବାଇମନ ପାଗଲ ହୋଇ, ବଣ କଥା ଦିନେ ଭାବିଲୁ ନାହିଁ
ବାଇମନ...... ॥ ଘୋଷା ॥

ବଣ ସଫା କରେ ପବନ ସେଥିପାଇଁ ତୋ ଚଳେ ଜୀବନ
ପିଇବା ପାଣି ତୋ ସଫା କରେ ବଣ
ସୂର୍ଯ୍ୟ ଶକତିରୁ ଖାଦ୍ୟ ଗଢଇ
ବାଇମନ........ (୧)

ବାଦଲରେ ଭରଇ ପାଣି ବରଷଇ ସମୟ ଜାଣି
ବଣ ଧରି ମାଟି ଚଳାଏ ତୋ ପାଟି
ବଣ ବିନା ପୋଡି ହୁଅଇ ନଈ
ବାଇମନ........ (୨)

ହୁଏ ବାତ୍ୟା ବଢ଼ି ମରୁଡ଼ି ଯହିଁ ଦେଖ ଦିଶଇ ବାଲି
ଗଛ ନ ଲଗାଇ ଉପାୟ ତ ନାହିଁ
ଗଛ ପୋଡି ଅଛି ପଡ଼ିଆ ପହି
ବାଇମନ ....... (୩)

କାରଖାନା ବିଷ ଓ ଧୂଳି ନାକେ ପଶେ ପବନେ ଉଡ଼
ବଣ ଧରି ତାହା ଚଳାଏ ତୋ ବାହା
ବଣ ସରିଗଲେ ପାରୁ କି ଜୀଇ
ବାଇମନ........ (୪)

ଖାଦ୍ୟ ସାର କାଠ ଔଷଧ କେନ୍ଦୁ ପତ୍ର ମହୁଲି ମଦ
ଅଏଁଲ ସରଗି ବହଲ କରଡ
ବିନା ଜୀଇ ରହି ପାରୁକି ଭାଇ
ବାଇମନ........ (୫)

ଠିକାଦାର, ବେପାରୀ ସ୍ୱେର ପାହାଡଙ୍କୁ କଲେ ଛତର
ଏକ ମନ ହୋଇ ବାହାରିଲେ ଆମେ
ଭଙ୍ଗି ପାରେ ସିନା ତାଙ୍କ ବଡାଇ
ବାଇମନ ........ (୬)

ଜାହାକୁ କାହିଁକି ଡରିବା ପାଟି ନ ଖୋଲିଲେ ମରିବା
ମିଳି ମିଶି ଗ୍ରାମେ ପକାଇବା କଥା
ଆମ ବଣଆମେ ରଖିବା ଭଇ
ବାଇମନ........ (୭)

ବଣୁ ଗଛ ସ୍ୱେରଏ ଯିଏ ଗଢ଼ିବର ଅଙ୍ଗରି ଯିଏ
କୋଡଏ ଦଫାତ ସରକାରୀ ନୀତି
ପଗ୍ୱରିବା ଅଫିସର ଡକାଇ
ବାଇମନ ........ (୮)



## ବଣ ଗୀତ

ଶୁଣ ହେ ଶ୍ରମିକ ଭାଇ ଜଙ୍ଗଲର କଥା ଦେଉଁ ବୁଝାଇ
ଓହେ ଭାଇମାନେ………
ସର୍ବେ ଶୁଣ ମନ ଦେଇ ।୧।

ଆଗ କାଳେ ଥିଲା ବଣ ସୁବିଧାରେ ଚଳୁଥିଲା ପରାଣ
ହାଏରେ ସତେ………
ଏବେ ହେଲା ତାହା ଶୂନ୍ୟ ।୨।

କେନ୍ଦୁ ମହୁଲ ଓ ଚାର କରଡ଼ କଅଁ କୁରେଇ ପତର
ଏ ସବୁ ଖାଇ…..
ସୁଖରେ ଥିଲା ଗରିବ ।୩।

ଚେର ମୂଳ ମରିଗଲା ଔଷଧ ପତର ନାହିଁ ମିଳିଲା
ହାଏରେ ସତେ ………
ପୂଜା ଦିଆ ଚଳୁ ହେଲା ।୪।

ଟରକ ଯନ୍ତ୍ର ଆସିଲା ଠିକାଦାର ଗଛ ବୋହିଇ ନେଲା
ଭାଇ ଭଉଣୀ………
ବୁଦ୍ଧି ଆମ କଣା ହେଲା ।୫।

ଜଙ୍ଗଲ ଗଲା ଉଜୁଡ଼ ସେଥିଲାଗି ବର୍ଷା ଯାଉଛି ଛାଡ଼
ହାଏରେ ସତେ………
ତେଣୁ ହେଉଛି ମରୁଡ଼ ।୬।

ଜଙ୍ଗଲ ଯିବାରୁ ଭାଇ ମାଟି ଘାସ ସବୁ ନେଉଛି ଧୋଇ
ହାଏରେ ସତେ………
ଖେତ ଘାର ମିଳ ନାହିଁ ।୭।

ନଈ ନାଳ ପୋତି ହୋଇ ନଈ ବଢ଼ିଯାଉ ହେଉଛି ଭାଇ
ହାଏରେ ସତେ ………
ଗାଆଁ ଗଣ୍ଡା ନିଏ ଧୋଇ ।୮।

ଦେଖ ଆମ ଦେଶ ନୀତି ମହୁଲ ଗଛର ଦିଅନ୍ତ କାଟି
ହାଏରେ ସତେ..........
ସାଗୁନ କାଜୁ ଲଗାନ୍ତି । ୯ ।

ବୃକ୍ଷୀ ପାଇଁ ଉପକାର ମହୁଲ ସରଗି କେନ୍ଦୁ ଗଛର
ସାଗୁନ କାଜୁ... .....
ଆମକୁ ନାହିଁ ଦର୍କାର । ୧୦ ।

ଜଙ୍ଗଲ ଆମ ଜୀବନ ତାକୁ ବଞ୍ଚାଇବା ଆମର କାମ
ନ କଲେ ଏହା -- .....
କରମ ହୋଇବ ବାମ । ୧୧ ।

—ଖଡଆଳ ଅଞ୍ଚଳର ଜନଗଣ

—o—

## କାହିଁକି ପୋତବ ଗଛ ?

ଗଛ ବଶି ପୋତି ପାଇ ଖାଇବାକୁ
କାଠ ଜାଳିବାକୁ ପାଇ
ଖଗକୁ ଏଡାଇ ଅମ୍ଳଜାନ ଦାଇ
କେତେ ସୁଖେ ବଞ୍ଚିରହି । ୧
ତିଆରି କରିବା ପାଇଁକି ଜାହାଜ
ଯିବାକୁ ସମୁଦ୍ର ପାର
ମାସ୍ତୁଲର ଖୁଣ୍ଟି ପାଲ ଧରିବାକୁ
ପଡା ଏଡବାକୁ ଝଡ । ୨
ଜାହାଜ ତଳର ପାଣି ତରସକୁ
ତାହାର ଛାତର କଡ

ଗଛର ବକଳୁ ମିଳିଥାଏ ପଗ
ଜାହାଜ ବନ୍ଧା ଦଉଡ଼ି । ୩
ଗଛଟିଏ ଯଦି ପୋତୁ ଅଛି କିଏ
ପୋତେ ସେ ଜାହାଜଟିଏ
ବ୍ୟବସାୟେ ଯାଇ ଖ୍ୟାତି ଲଭିଥିଲେ
ଆମରି ସାଧବ ପୁଏ । ୪

ଗଛରୁ ମିଳଇ ହଜାରେ ଜିନିଷ
ନିତି ଯାହା ଆମେ ଦେଖେ
ବ୍ୟବହାର ଯାର ଜାଣିରହେ ନର
ସଭ୍ୟ ହେବା ପାଇଁ ଶିଖେ । ୫

ଗଛ ଅଗ୍ରଭଗ ଘୋଡାଇ ପକାଏ
ଶୈଳ ଶିଖର ଦେଶ
ସବୁଜିମା ତାର କରଇ ସୁନ୍ଦର
ଜନମ ଭୂଇଁର ବେଶ । ୬

ଗଛର ଡାଳରୁ ଦଣ୍ଡଟିଏ ମିଳେ
ଜାତୀୟ ପତାକା ପାଇଁ
ଦରଶନେ ଯାର ସୁମରଇ ନର
ନିଜର ଜନମ ଭୂଇଁ । ୭

ଗଛ ଧରି ରଖେ ସଉର ଶକତି
ସବୁ ଉତ୍ପାଦନ ପାଇଁ
ଗଛଟି ପୋତିଲେ ସବୁ ପୋତେ ଆମେ
ଭୁଲି ଯାଉ ନାହିଁ ଭାଇ । ୮

ନିଜର ନାଆଁରେ ଜମି ନାହିଁ ଯଦି
ଉଣା କର ନାହିଁ ମନ
ଭୂମିହୀନେ ମିଳି ପଡିଆ ଜମିରେ
ଗଛ ପୋତି ଲେଖ ନାମ । ୯

ହୋଇ ପାରେ ସେହି ଜମିର ମାଲିକ
ସରକାର ଜମିଦାର
ପଡଆ ପାଇଲେ ଗଛ ପୋତ ଭାଇ
ପାରିଲେ କର ନିଜର ! ୧୦

—୦—

( ଡେରାଡୁନ ବନ ଗବେଷଣା କେନ୍ଦ୍ରରେ ଉପରାଷ୍ଟ୍ରପତି ଶ୍ରୀଯୁକ୍ତ ହିଦାୟତୁଲ୍ଲା ଗାଇଥିବା ଇଂରାଜୀ କବିତାର ଛାୟାରେ ରଚିତ 'ଆତ୍ମୀୟ'ରେ ପ୍ରକାଶିତ )

## କ ପଢ଼ିଲୁ ଆଜି ?

ଜୀବନ ବାଦୀ

( ୧ )

କ ପଡଲୁ ଆଜି ସ୍କୁଲରେ ତୁମ୍ଭର
ବୁଝାଇ କହତ ବାବୁ
ଶୁଣି ଅଛୁ କିବା ମନଦେଇ ଯାହା
କହିଲେ ମାଷ୍ଟର ସବୁ ?
କି କହିବା ବାପା କେତେ କଥା ଆମ
ସ୍କୁଲରେ ହୋଇଛି ପଢା
ସବୁ କଥା କିବା କହି ମୁଁ ପାରିବି
ପାଠ ଲାଗେ ଭରି କଡା
ପଢ଼ିଛି ମୁଁ ବାପା ରାଷ୍ଟ୍ରପତି ଆମ
ନ କହନ୍ତି କେବେ ମିଛ
ନ ମରନ୍ତି ଯୁଦ୍ଧେ ସଇନ ଆମର
ନ ଅସନ୍ତି କେବେ ପଛ

ସ୍ୱାଧୀନ ସରବେ ସମାଜ ଭିତରେ
ପରାଧୀନ କେହି ନୋହେ
ଏପରି ଅନେକ କଥା ମୁଁ ଶିଖିଛି
ଆଜି ବିଦ୍ୟାଳୟ ଗୃହେ

( ୨ )

କି ପଢ଼ିଲୁ ଆଜି ସ୍କୁଲରେ ତୁମର
ବୁଝାଇ କହତ ବାବୁ
ଶୁଣି ଅଛୁ କିବା ମନଦେଇ ଯାହା
କହିଲେ ମାଷ୍ଟର ସବୁ
କି କହିବି ବାପା ପଢ଼ିଛି ଆଜି ମୁଁ
ପୋଲିସ୍ ଆମର ସଖା
କହିଛନ୍ତି ଗୁରୁ ସମାଜେ ନ୍ୟାୟର
ଶେଷପାଏ ନାହିଁ ଦେଖା
ଶିଖିଛି ମୁଁ ଯାଇ ହତ୍ୟା ଯେ କରଇ
ମରେ ନିଜ ଦୋଷ ପାଇଁ
ଦଣ୍ଡ ପାଇବାକୁ ବାଧ୍ୟ ହେଉ ଆମେ
ଭୁଲ ହୋଇଗଲେ କାହିଁ
ଏହିପରି କେତେ କଥା ଯେ ଶୁଣିଛି
ଆଜି ପାଠଶାଳା ଘରେ
ଟିକିନିଖି ସବୁ କହି କି ପାରିବି
ଯଦି ବା କେହି ପଚ୍ଚରେ ?

( ୩ )

କି ପଢ଼ିଲୁ ଆଜି ସ୍କୁଲରେ ତୁମର
ବୁଝାଇ କହତ ବାବୁ
ଶୁଣି ଅଛୁ କିବା ମନଦେଇ ଯାହା
କହିଲେ ମାଷ୍ଟର ସବୁ ?

ଶୁଣି ଅଛି ଯେତେ ଭଲମନ୍ଦ କଥା
ପଡୁ ନାହିଁ ସବୁ ମନେ
କହୁଥିଲେ ଗୁରୁ ସରକାର କଥା
ଭୁଲ୍ ଯେ ନ କରେ ଦିନେ
ଦେଲେ ଉପଦେଶ ସରକାରଙ୍କର
ମୁଠା କରିବାକୁ ଟାଣ
ବୁଝାଇ କହିଲେ ନେତା ଆମ ଭଲ
କର ତାଙ୍କ ଗୁଣ ଗାନ
କରିଲେ ଏପରି ଜିତିବେ ସେମାନେ
ନିର୍ବାଚନ ବେଳ ହେଲେ
ସବୁ କଥା କିବା କହି ମୁଁ ପାରିବି
ଗୁରୁଏ ଯାହା କହିଲେ

( ୪ )

କି ପଢ଼ିଲୁ ଆଜି ସ୍କୁଲରେ ତୁମର
ବୁଝାଇ କହତ ବାବୁ
ଶୁଣି ଅଛୁ କିବା ମନଦେଇ ଯାହା
କହିଲେ ମାଷ୍ଟର ସବୁ ?
ଶୁଣିଛି ହେ ବାପା ମନଦେଇ ଆଜି
ପଢ଼ା ହେଲା ଇତିହାସ
କହିଲେ ଗୁରୁଜୀ ଯୁଦ୍ଧ କରିବାଟା
କେବେ ନୋହେ ଉପଦେଶ
ଗଣତନ୍ତ୍ର ମଧ୍ୟେ ମହା ସମରର
କାହାଣୀ ଲଗିଲା ଭଲ
ପାକିସ୍ଥାନ ଆଉ ଚାଇନାର ମାଟି
ଧୋଇଥିଲା ପର ଜଲ
କଳପନା ମୁହିଁ କରୁଥିଲି ଏହି
ସୁଯୋଗ ପାଇବି କେବେ
ସବୁ ପାଠ କଥା କହି କି ପାରିବି
ପଚାରିବ ତୁମେ ଯେବେ ?

--o—

## ଚଷା ଭାଇରେ

ଜୀବନବାଦୀ

ଆଷାଢେ ଉଡୁଛେ ଧୂଲି, ଗଜାମୁଗ ..... ଆଷାଢେ ଉଡୁଛେ ଧୂଲି

ଝାର ଜଙ୍ଗଲ କଟା ହେଉଛେ ବୁଲି

ମୋର୍ ଗଜାମୁଗରେ

ଗରିବ ମଲାନ ବୁଲି, ଗଜାମୁଗରେ ......... (୧)

ସର୍କାରୀ ଲୁକଙ୍କ ବୁଦ୍ଧି, ଗଜାମୁଗ ...

ସର୍କାରୀ ଲୁକଙ୍କ ବୁଦ୍ଧି .........

ଆମର୍ ଲାଗି ଝୁରି ଦେସନ୍ ଗଦ୍ଧ

ମୋର୍ ଗଜାମୁଗରେ

ନାଇଁ ଶିଖାନ ଝୁରି ଧର ବୁଦ୍ଧି ଗଜାମୁଗରେ ......... (୨)

ଘରେ ଦେସନ୍ ଜର୍ସି ଗାଈ, ଗଜାମୁଗ .........

ଘରେ ଦେସନ୍ ..... .....

ଘରେ ଏକଲା ବସେ ଓଡଆ ମାଈ

ମୋର୍ ଗଜାମୁଗରେ

ବର ବୁଲେ ଦାଦାନ୍ ହେଇ ଗଜାମୁଗରେ ..... .... (୩)

ବିହନ ଦେସନ୍ ନକଲି, ଗଜାମୁଗ .........

ବିହନ ଦେସନ୍ ..... ....

ସରକାରୀ ଲୋକେ ଜିପ୍‌ଥିଁ ବୁଲି

ମୋର୍ ଗଜାମୁଗରେ

ନେତାଙ୍କର କଥା କଅଁଲି ଗଜାମୁଗରେ ......... (୪)

ଏନ୍ତାଥି ନାଇଁ ଚଲେ କାମ, ଗଜାମୁଗ..........
ଏନ୍ତାଥି..........
ବସିଖିଆ ଲୁକେ କରସନ୍ ଆରମ୍
ମୋର୍ ଗଜାମୁଗରେ
ଖଟିଖିଆକୁ ନେସି ଯମ୍
ଗଜାମୁଗରେ .......... (୪)

—o—

## ରଙ୍ଗବତୀ ନୃତ୍ୟ

ପୁ:- ରଙ୍ଗବତୀ ରେ ରଙ୍ଗବତୀ
ଯେତିକି ଲୁକର ହେତିକି ଗଛ ଯିମା ତ ବୁଟି
କାଏଁ କରବେ ଧଲିଆ ଗୁଟି ?

ସ୍ତ୍ରୀ:- ଭେଲକି ଲାଗେ ଗୋ ଭେଲକି ଲାଗେ
ଆଧିକ୍ ଲାଗେ ଦେଖି ଗାଁ ରାଇଜର ନୀତି
ଲଡଲେଁ ସଭେ ପାରମା ଜିତି ।

ପୁ:- ସପନ ଜୀବନ ସପନ
ସ୍ତ୍ରୀ:- ଘନିର ଲାଗି ମନେ ମୋର
(ଭଜାର) କଲିଁ ସୁବୁତା

ପୁ:- ରଙ୍ଗବତୀ ରଙ୍ଗବତୀ
ରଙ୍ଗବତୀ ରେ ରଙ୍ଗବତୀ
ରଙ୍ଗବତୀ ରଙ୍ଗବତୀ ଲାଜକୁରି ଲତା
ଶୁନ୍ ଜୀବନର କଥା

ସ୍ତ୍ରୀ:- ସବୁଆଡୁ ଆମର ରକତ ଚୁହୁଛନ
ଘରେ ଭୁକୁଛନ୍
ଦୁଃଖ ଦଉଛନ ପେଟେଁ ମାରୁଛନ ରେ...............

ପୁ:- ମନେ ଜୁଏ ଜଳିଜାନ ରେ.........
କାଏଁ ହେବା ଧନ
ଦମ୍ଭ ଧରନ
ଲୁକେ ନାଇଁ ଦେଲେ ମନ
ସ୍ତ୍ରୀ:- ବିହି ଖଣ୍ଡେ କେତେ ଜ୍ଞାନ ବିଜ୍ଞାନ
ପୁ:- ଜାନିବାର ଲାଗି ମନେ ସୁରୁତା
ପୁ:- ରଙ୍ଗବତୀ .........
ରଙ୍ଗବତୀରେ
ରଙ୍ଗବତୀ.........ଲାଜକୁରି ଲତା
ଶୁନ୍ ଜୀବନର କଥା
ସ୍ତ୍ରୀ:- ଦେଖୁଥିମି ତୁମର ପାରିବାର ପନ
ରଙ୍ଗା ରତନ
ଆସ ଗୋ ଧନ
ଦେଶର ଲାମେ ଦେମା ମନ
ପୁ:- ମନ ତୋର ଜାନେ ଧନରେ .......
ତୁଇ ମୋର ରତନ
ବଲଭ ଝରନ
ତୋର ଲାଗି ପାଏସିଁ ଜ୍ଞାନ
ସ୍ତ୍ରୀ:- | ଯିମା ଗାଁ ପର ଆମର ପଢ଼ଶା
ପୁ:- | କହେମା ଅଧିକାର କାମର ଭୂତି
ରଙ୍ଗବତୀ . .
ପୁ:- ରଙ୍ଗବତୀ.....
ରଙ୍ଗବତୀ ରଙ୍ଗବତୀ ଲାଜକୁରୀ ଲତା
ଶୁନ୍ ଜୀବନର କଥା
ସ୍ତ୍ରୀ:- ତୁମେ ମୋର ଜୀବନ ହୀର ଗୋ ସୁନା
ତୁଇ ବାସନା
ନୁଆଁ ସିଜିଁନା
ଝାଁରର ଝରନା ଗୋ
ପୁ:- ଜୀବନ ଝରନା ଶୁଖେ ରେ
ଝାର ପୁଡା ହେଡା ହେଲେ ତ ମନା

ଦୁଖେ ଭରେ ସନ୍ଦେମା ଦିନ
ସ୍ତ୍ରୀ:- ଦିମା ଖଣ୍ଡି ଆମେ ଜୀବନ ଧାରନା
ପୁ:- ସବୁ ଦିନର ଲାଗି ରଖମା ଜୀଇଠ
ରଙ୍ଗବତୀ ... ରଙ୍ଗବତୀ......

ଭଗନ ବାଦୀ



## ଫୁଙ୍କ ଫୁଙ୍କ ପି

ମଙ୍ଗଳ ଚରଣ ସାହୁ (ମଙ୍ଗୁ)

ରାମ ରାଜ୍ୟେ ଫଳମୂଳ
କୃଷ୍ଣ ରାଜ୍ୟେ ଘି
କଳିଯୁଗେ ତେଲ ସୁଦ୍ଧା
ଫୁଙ୍କି ଫୁଙ୍କି ପି (୦)
ଏ ନାତି ଫୁଙ୍କି ଫୁଙ୍କି ପି
ନାଇଁ ଆଉ୍ ଆଗର କଥାରେ
ଜଳୁଥା ଦୁଇ କେତେ ସୁଲୁତା
ଗରୀବ ଦୁଃଖି ମନୁଷନ୍ ଭୁକରେ
ପେଟ ପୁର ନାଇଁ ମିଳେ କେଭେ
ସରିଗଲା କଥା – ସବୁ ହେଲା ପିତା
(ଏ ନାତି) ତେଲ ଖାଦ୍ ଯେତେ ଗଲାନ ଉଭି (୧)
ଜଳେ ଦୁଇ ଯେତେ ଦୁଗିରେ
ନାଇଁ ମିଳେ ପଖାଳ ଖୁଦି
ଦହି ମହି ଖୁରସ୍ କଥାରେ
ନାଇଁ ଦେଇ ଆମ୍କେ ବିଧାତା
କୃଷ୍ଣ ଯୁଗର ନାଈ – କାହିଁ ଗଲେ ଯାଇ
(ଆଜିର) ଘି' ଖି ତାଙ୍କର୍ ମିଶୁଛେ ଚର୍ବି (୨)

କଳିଯୁଗ ଆସିଛେ ମାଟିରେ
ମିଛେ ସଭେ ଯାଉଛନ ମାତି
ଗରୀବର ଚିହ୍ନଛେ ତଣ୍ଟିରେ
ପୁଞ୍ଜିପତି ଭରୁଛେ ଅଣ୍ଟି
ହେଲେ ସଭେ ଅଥା - ଜବତେ ଯୁବୁତା
(ଦେଖୁଥା) ଆଗର୍ କଥା କେ ମନ୍‌ରେ ଝୁରି (୩)

୧୬/ଅକ୍ଟୋବର ୮୩
ବିଜୟା ଦଶମୀ

—○—

## ଢୋଲ ନୃତ୍ୟ

( ଯମୁନା ପିଭାର ଚାଟେ ହୋ ବୁଡ଼େ )

ପଳାସ ରଙ୍ଗ ମଖାଇ ହୋ………
କେବେ ଆମ୍ଭିଥିବା ହୋଲି ଯିବା ଏବେ
ଆସେ ନବ ରକ୍ତ ନେଇ…… …. (୧)

ମଣିଷ ରକତେ ହୋଲି ହୋ………
ଖେଳୁ ଥାନ୍ତି ଯିଏ ଧନେ ତାଙ୍କୁ କିଏ
ଗରୀବ ମରଇ ଖାଲି……… (୨)

ବଡ଼ ମରୁଡ଼ ଧୋକା ନହି ହୋ………
ପାହାଡ଼କୁ ଲଣ୍ଡା ନଇ ପୋଡ଼ି ହୁଣ୍ଡା
ମଣିଷ ମିଛେ ମରଇ……… (୩)

ଆମ୍ ହତ୍ୟାର ଏ ଯୁଗ ହୋ………
ଶୋଷଣ ଧର୍ଷଣ ହୁଏ ଆଜି ଜୁଣ
ଶାସ୍ତ୍ରର ଅପ ପ୍ରୟୋଗ………… (୪)

ଜଙ୍ଗଲେ ନିଆଁର ହୋଲି ହୋ.....—
କେନ୍ଦୁ ପତ୍ର ତୋଳା ପାଇଁ ନିଆଁ ଜଳା
ସହି ଯିବା ଯିନା ମରି.......... (୪)

ଉତ୍କଳ ସମ୍ବଳ ବୀର ହୋ..........
ପାହାଡ ଦେବତା ମୁଣ୍ଡ ଲମ୍ବା କର
ସେ ପ୍ରଭୁଙ୍କ ନିଜେ ମର.......... (୬)

ଓଡଶାରେ ଘର କରି ହୋ ..........
ଓଡଶୀ ଜିଦବ ସ୍ନେହ ଶ୍ରଦ୍ଧା ଘବ
ଚିତ୍ତରି ଜୀବନ ଧର.......... (୭)

ଓଡ଼ଶୀ ନୀତି ସଂସ୍କୃତି ହୋ — .....
ଜାଣି ବୁଝି ଭାଇ ଉଠ ଆଜି ଚେଇଁ
ଜୀବନ ସମରେ ମାତି ..... ..... (୮)

ସହଯୋଗ ସମବାୟ ହୋ ..........
ବିବେକର ଗତି ଆନନ୍ଦର ରୀତି
ମାନି ହେଉ ଆମର ଜୟ .......... (୯)

ସଂପଦରେ ଅଧିକାର ହୋ ..........
କର୍ତ୍ତବ୍ୟ ଦାୟିତ୍ୱ ଏକତାରେ ମନ
ଦେବା ପାଇଁ କି ବାହାର.......... (୧୦)

ଜୀବନ ବାଦୀ
୧୯୮୪



## "ମୋ ମୁହେଁ ନାହିଁ କି ଲାଜ ଭୟ"

ଦେବୀ ପ୍ରସାଦ ପଟ୍ଟନାୟକ

**ଗାଡ଼ଆରେ ଫୁଟେ କଇଁ ଗୋ, ଫୁଲ ବଉଳ ଝେଣୀ**
**ଜୀବ ବିଜ୍ଞାନର ପ୍ରାଚୀର ପତ୍ରିକା, ଦେଖିଯିବା ଆସ ଧାଇଁ ଗୋ ....**

ସୂରୁଜ ଆସଇ ଉଇଁ ଟଗୋ ଫୁଲ..... .....
"ଅଙ୍ଗାରକାମ୍ଳ" ସେ ପ୍ରାଣୀ ନିଶ୍ୱାସର
ଉଦ୍‌ଭିଦ ନିଏ ଗ୍ରହି ଲୋ ।୧।

ସୂରୁଜ କିରଣ ଶକ୍ତି ଗୋ ଫୁଲ..... .....
ଶ୍ୱେତ ସାର ଖାଦ୍ୟେ ସଂଚିତ ହୋଇଲା
ଖାଇ ପ୍ରାଣୀ ଉଠେ ମାତି ଲୋ ।୨।

"ଆଲୋକ ଶ୍ଲେଷଣ" କ୍ରିୟା ଗୋ ଫୁଲ ... .....
ଗଛଲତା ଏଥୁଁ, ଅମ୍ଳଜାନ ଦେଲେ
ପ୍ରାଣୀଙ୍କ ଫୁଲିଲା ହିଆ ଗୋ ।୩।

ଗଛ ଲତା ବନ୍ଧୁ ହୁଣ୍ଡିଲେ ଫୁଲ..... .....
ଉଦ୍ଭିଦର ଖାଦ୍ୟ ପ୍ରାଣୀଏ ସ୍ୱେଗଇ
କରିଛନ୍ତି ଏଡେ ଗଣ୍ଡି ଲୋ ।୪।

ଜାଣିଛୁକି "ଜଳଚକ୍ର" ଲୋ ଫୁଲ..... ....
ଉଦ୍ଭିଦ ନଥିଲେ ସିଏବି ନ ଥାନ୍ତା
ଜୀବନ୍ତ ହୁଅନ୍ତା ବନ୍ଧ ଲୋ ।୫।

ମଣିଷ ହାରମ ଜାତି ଲୋ ଫୁଲ .... ---
ଅମ୍ଳଜାନ, ଖାଦ୍ୟ ଉଧାରି ନେଇ ସେ
କାଟୁଛି ଗଛର ତଣ୍ଟି ଲୋ ।୬।

ଖୋଳିଛି ମଣିଷ ଗାତ ଲୋ ଫୁଲ..... .....
ଜଙ୍ଗଲ ତ ସଫା ଦେଖି ଡରେ ପୁତ
ପଡ଼ିଯିବ ଅବା ଖାତେ ଲୋ ।୭।

ଘରେ ତା ରହିଲା ବାଲ ଲୋ ଫୁଲ............
ଖାଦ୍ୟ ଜଳ ବିନା ସତେ କି ତିଷ୍ଠିବ
ସେମାନଙ୍କ ସୃଷ୍ଟି ଲୀଳା ଲୋ । ୮ ।

ପଢ଼ ଲାଗେ ମୋତେ ଲାଜ ଲୋ ଫୁଲ ..... ...
ଜଅଁଳ ଥନରେ, ଦୁଧ ତ ନ ଥିବ
ମାଆ ହେଲେ ସଜବାଜ ଲୋ । ୯ ।

ବାନିକି ପିଟି ମୁଣ୍ଡ ଲୋ . ଫୁଲ..... —
ପରିପାର୍ଶ୍ୱ'' ନଷ୍ଟ ହୁଏ ଯେବେ
ଲାଗିଯିବ କେତେ କାଣ୍ଡ ଲୋ । ୧୦ ।

ଖଡ ଗଲା ଗଡ ଗଡ ! ଲୋ ଫୁଲ .........
ଜୀବ ବିଜ୍ଞାନର ପତ୍ରିକାରେ ପଢ଼
ଫେରିଯିବା ଉର୍ଦ୍ଧି ପଢ ଲୋ । ୧୧ ।



# ଭାବନା

ଜୀବନବାଦୀ

(୧)

ଜଗତେ ଲାଗିଛି ମରଣ ମେଳା
ଖାଦ୍ୟ ଅଭାବରୁ ଫୁଟଇ ଡୋଳା
ନିଜ ହାତେ ସୃଷ୍ଟି ହୁଏ ଯାହାର
ଯୁଦ୍ଧ ଭୟେ ଥରେ ନିରତ ଧରା
ମଣିଷକୁ ମାରି ମଣିଷ ଖାଏ
ଶିକ୍ଷା ସଂସ୍କୃତିକୁ ଭାବଇ କିଏ ?
ଏପରି. ଧରାରେ ରହିବା ପାଇଁ
ବିବେକ ଆନନ୍ଦେ ମାତରେ ଭାଇ

(୨)

ଧରାରେ ଲାଗିଛି କ୍ଷମତା ମେଳି
ଗରିବ ରାଇଜେ ନପାରେ ଚଳି
ଧନୀ ଦେଶ ଦେଇ ରଣ ହୁଙ୍କାର
ବିଷ ଚଶେ ନର ହୁଏ କଙ୍କାଳ
ପେଟ ପାଇଁ ପେଟ ତଳ ବିକିଛି
ଯୁବା ବୁଲେ ଧାଇଁ ଖୋଜେ ଚାକିରୀ
ଗରିବ ମିଶିଲେ ପାରିବ କିଏ
ଭାସିଯିବେ ଧନୀ ବିପ୍ଳବ ସୁଏ

(୩)

ବଣହାଣି ଯେବେ କରିବା ପଦା
ପାଇବାକି ଫଳ ପତର କଦା
ମିଳିବକି ଡାଳ ପାଟି ଚନଖା
ଛାଡ଼ିଯିବ ଆମ ପାତର ଦେଖା

ପୋତି ହେବ ନଈ ଘଷିବ ଘର
ଛାଡମୀବ ସବୁ ଭ୍ରମ ସ୍ତର
ହେ ସୁଧୀ ସମାଜ ଧର ଜୀବନ
ନ ହାଣ ନ ପୋଡ ନିଜର ତଣ

—o—

## ତନ୍ତୀ ଓଲୁ

ଜୀବନବାଦୀ

ତନ୍ତୀ ଓଲୁ ବୋଲି ତନ୍ତେ ବୁଣି ଲୁଗା
ଯୋଗାଉ ଥିଲା ସେ ଗଇଜ ଲୋକେ,
ପରିଶ୍ରମେ ତାର ଇଜ୍ଜତ ଘୋଡ଼ାଇ
ଥଣ୍ଟା କରୁଥିଲେ ତାକୁ ଯା ଥୋକେ ।
ଗାଁ ସ୍ୱରିପଟୁ ପାଉଥିଲା ସିନା
ଅଶନ ଅର୍ଜୁନ ଗଛରୁ କୋଷା,
ହୋଇଥିଲା ତେଣୁ ପାଟ ମଠା ବୁଣା
ତନ୍ତ ଚଳାଇବା ତାର ବେଉସା ।
କିଣି ତା ହାତରୁ ବିକୁଥିଲେ ନେଇ
ଜାଭା ସୁମାତ୍ରାର ସାଧବ ପୋଏ,
ସେଇ ତନ୍ତୀ ଓଲୁ ଆଜିବି ବଞ୍ଚିଛି
ଯାଇଛି ବଦଳି ଶିଳ୍ପର ସୁଏ ।
ଗାଁ ଘରଛାଡ଼ି ତିଆରିଛି ସିଏ
ସହର ଭିତରେ କୁଡ଼ିଆମାନ,
କିଣି ଟିକେ ଅଣ୍ଟା ଭତ ଗଣ୍ଡିଦିଏ
ବଡ଼ ଲୋକଙ୍କର ଧୁଏ ବାସନ ।
ଜଙ୍ଗଲ ଉଜୁଡ଼ କୋଷା ମିଳେ ନାହିଁ
କେତେ କଳବୁଣା ଲୁଗା ବଜାରେ,

ତନ୍ତୀ ଓଲୁ ବସେ ପାନ ଦୋକାନରେ
ଠିକାଦାର ଟ୍ରକ ଡାଲ ଉପରେ ।
କେତେ ସମବାୟ ନୂଆ ସୂତାକଳ
ସରକାର ତନ୍ତ ଦିଅନ୍ତ ଘରେ,
କିଣିବାକୁ ମିଳେ ଲୁଗା ଦୋକାନରୁ
ଷ୍ଟଇବା ରେଶମ ଗୁଆଭଡନି ।
ତନ୍ତୀ ବାପୁଡାର ଲୁଗାରେ
ନ ଦିଶଇ ତାହା ପିନିପିନି,
ରେଶମ ଉତ୍ପନ୍ନେ ପ୍ରଥମ ଷ୍ଟଇନା
କୋରିଆ ଦ୍ୱିତୀୟ ଭରତ ତିନି,
ବଣ ରକ୍ଷା ଷଷ ହୋଇଲେ ଏ ଦେଶ
ହୁଅନ୍ତା ପ୍ରଥମ କିଏ ଜାଣୁନି ।
ଷ୍ଟଇନାର ଲୋକେ ମଇଲା ପଷ୍ଟଇ
ରଖା ବାଷ୍ପ ପାଇଁ ପାଆନ୍ତ ସାର,
ପୋଖରୀ ହୁଡାରେ ଜମି ଢ଼ିପରେ
ତୁତ ଗଛ କାଢ଼ ରେଶମ ଡୋର ।
ତନ୍ତୀ ଓଲୁ ପାଇଁ ଗଇଜେ ଆମର
ନାହିଁ ଜମି ନାହିଁ ପୋଖରୀ ହୁଡା,
ରେଇ ଦେବା ପାଇଁ ଅଶନ ଅର୍ଜୁନ
ନହେଲେ ମେଞ୍ଚାଏ ନିର୍ଲଜୀ ଭଡା ।
ଭଡା ପତରକୁ ଜୋକା ପୋକ ଖାଇ
ମିଳନ୍ତା ରେଶମ ଗୋଖାଦ୍ୟ ତେଲ,
ତନ୍ତୀ ଓଲୁ ପାଇଁ ନୀତି ଗଢା ହେଲେ
ତନ୍ତ ଧରି ସିଏ ଖେଳନ୍ତା ଖେଲ ।
ସରକାର ଆମ ଗରିବ ଲୋକଙ୍କ
ଥଇଥାନ ପାଇଁ ଯୋଜନା କରେ,
ଦେଖୁ ନାହାନ୍ତି କି ସରକାରୀ ଲୋକେ
ତନ୍ତୀକୁ ସୁନ୍ଦର ଖୋପଡ ଘରେ ।
ସମନ୍ୱିତ ଗ୍ରାମ ବିକାଶ ନାଆଁରେ
ହୁରି ପଡ ଅଛି ଦେଶଟା ସାରା,

ବିକାଶ ବହଳି ତନ୍ତୀ ଯାଏ ଗଳି
ସରକାରୀ ଜାଲେ ନ ପଡେ ଧକ୍କା ।
ତନ୍ତୀ ବାପୁଡାର ଅଛି କିବା ଘର
କାରଖାନା ବଡ ଲୋକଙ୍କ ଫାନ୍ଦେ,
ତନ୍ତୀ ପେଟ ସିନା ପିଠିରେ ଲାଗୁଛି
ତାପାଇଁ କି ନେତା ସଭରେ କାନ୍ଦେ ।
ବନୀକରଣ ଓ କୃଷି ବିଭଗରୁ
ଚାଲଇ ରାସ୍ତାରେ ବିକାଶ ଗାଡ,
ମୃତ୍ତିକା ରକ୍ଷଣେ କାହୁ କାହୁଁ ରିନା
ତନ୍ତୀ ଓଲୁ ଯାଏ ପଛରେ ପଡ ।
ଯୋଜନାକାରୀଙ୍କ କାମ ଦେଖି ଭଇ
ଖାଉଆଙ୍କ ଦାନ୍ତେ ଲଗାଅ କଡ,
ପଢାନ୍ତୁ ମାଷ୍ଟର ବିକାଶର ପାଠ
ଗରିବ ଓଡଆ ଚାଲନ୍ତୁ ମାଡ ।



## କେଞ୍ଚୁଆ ଉପାଖ୍ୟାନ

( ଡ: ବିକ୍ରମ କେଶରୀ ସେନାପତି,
ପରିବେଶ ଚେତନା ସଂସଦ
ଜୀବନ ବିଜ୍ଞାନ ବିଭାଗ
ପୁରୀ ବିଶ୍ୱବିଦ୍ୟାଳୟ )

ଓଁ ମୃର୍ତ୍ତିକା ଦେବ୍ୟୈ ନମଃ
କେଞ୍ଚୁଆ ଉପାଖ୍ୟାନ ଶୁଭାରମ୍ଭ
ଉତ୍କଳ ଦେଶେ ଜୀବ କେଞ୍ଚୁଆ
ଅନ୍ୟ ନାମେ ଲୋକେ ବୋଲନ୍ତି ଜୀଆ । ୧ ।

ପ୍ରଥମ ଭାଗେ କେଞ୍ଚୁ ସ୍ଥଳ ସୃଷ୍ଟି ସଂସ୍ଥାପକ
ଦ୍ୱିତୀୟ ଭାଗେ କେଞ୍ଚୁ ଜନ କଲ୍ୟାଣେ ସେବକ । ୨ ।

ପ୍ରଥମ ଭାଗ :

ଶୁଣ ଶୁଣିବେ ସୁଧିବୃନ୍ଦ ଦେଇ ମନ କର୍ଣ୍ଣ
ଜୀଆ ଉପାଖ୍ୟାନ କହେ କେଶରୀ ବିକ୍ରମ । ୩ ।

ଜଳ ଭାଗ ସୃଷ୍ଟି ପରେ ସ୍ଥଳ ଭାଗ କଥା
ଭାଳି ଭାଳି ଚିନ୍ତାମଗ୍ନ ଘୂରୁଅଛି ମଥା । ୪ ।

ବ୍ରହ୍ମା ଭାଳୁଛନ୍ତି କେ ଅଛଇ ଏମନ୍ତ
ଜଳମଧ୍ୟୁ ମାଟି କାଢ଼ି ଗଢ଼ିବ ଜଗତ । ୫ ।

ବ୍ରହ୍ମା ବିଷ୍ଣୁ ତ୍ରିମୂର୍ତ୍ତିଙ୍କ ହୋଇଲା ବିଚାର
କେଉଁ ମତେ ସମାଧିବା ସଂକଟ ସ୍ଥଳର । ୬ ।

ଜୀବ ସୃଷ୍ଟି ହୋଇଲେଣି ଜୀବନ ସଂଯୋଗେ
ସ୍ଥଳଭାଗ ନ ରଚିଲେ ପକ୍ଷୀଏ ମରିବେ । ୭ ।

ହଂସହଂସୀ କ୍ରୀଡାରତ ଜଳ ମଧ୍ୟେ ବାସ
ଅଣ୍ଡା ପ୍ରସବିବ ହଂସୀ ପାଇଲାଣି କ୍ଲେଶ । ୮ ।

ଆତୁର କଣ୍ଠେ ଡାକୁଛି ପ୍ରଭୁ ହେ ଉଦ୍ଧାର
ବଞ୍ଚାଇ ନ ପାର ଯଦି କାହିଁକି ନ ମାର ? । ୯ ।

ପାର୍ବତୀ ଦେଖି ଏମନ୍ତ ହଂସୀର ଆତୁର
କହିଲେ ହେ ବ୍ରହ୍ମା ବିଷ୍ଣୁ ମହେଶ୍ୱର । ୧୦ ।

ସୃଷ୍ଟିର ସର୍ଜନା ଯଦି ଜାଣି ନାହିଁ ପ୍ରଭୁ
ଜୀବ ଦାନ ଦେଇ ଏବେ ଧ୍ୱଂସିବକି ପ୍ରଭୁ । ୧୧ ।

କହୁଅଛି ମୋର ବୋଲ କରନ୍ତୁ ଏଥିକୁ
ଯାଆନ୍ତୁ ଏକ୍ଷଣି ଶିବ ପାତାଳ ପୁରକୁ । ୧୨ ।

ଅଛନ୍ତି ସେଠାରେ ତିନି ରାଜା ବିଚକ୍ଷଣ
ଦଶରଥ, କେଉଜ ଓ କଚ୍ଛପ ରାଜନ । ୧୩ ।

ଖନନ କରିବେ ମାଟି କେଉଜ ଦଶରଥ
ପୃଷ୍ଠେ ବୋହି ଉସାଇବେ ମୃତ୍ତିକା କଚ୍ଛପ । ୧୪ ।

କଚ୍ଛପ ପାଇବେ ବର ଇଚ୍ଛା ମହେଶ୍ୱର
ସ୍ଥଳ ସୃଷ୍ଟି ହେବ ଭସି (ମାଟି) ପାଣିର ଉପର । ୧୫ ।

ଏହି ମତେ କାର୍ଯ୍ୟ କଲେ ହେବ କାର୍ଯ୍ୟ ସିଦ୍ଧି,
ଯାଆନ୍ତୁ ହେ ମହେଶ୍ୱର ସର୍ବ ଶୁଭ ସିଦ୍ଧି । ୧୬ ।

ସେହି ମନେ ଶିବ ଚଳେ ପାତାଳ ପୁରକୁ
କଚ୍ଛପ, କେଉଜ, ଦଶରଥଙ୍କ ପାଖକୁ । ୧୭ ।

ସାଦରେ ଅଭ୍ୟର୍ଥି ଦେବ ଦେବ ମହେଶ୍ୱର
ଜଣାଇଲେ ନେବେ ତେବେ ସ୍ଥଳ ସୃଷ୍ଟି ଭର । ୧୮ ।

ପାର୍ବତୀଙ୍କ ଇଚ୍ଛା ମତେ ସ୍ଥଳ ସୃଷ୍ଟି ହେଲା
ହଂସୀ ଅଣ୍ଡା ପ୍ରସବି କୃତ୍ୟ କୃତ୍ୟ ହେଲା । ୧୯ ।

ସେହି ଦିନୁ କେଉଜ, କଚ୍ଛପ, ଦଶରଥ
ସ୍ଥଳ ଭଗ ସୃଷ୍ଟି ସଂରକ୍ଷଣେ ଛନ୍ତି ରତ । ୨୦ ।

**କେଉଁଆ ଅଟଇ ସବୁଠାରୁ ପୁଣି ସାନ**
ଅଧିକ (ତା) ମନ ଜନ କଲ୍ୟାଣେ ସାଧନ । ୨୧ ।

ଶିବଙ୍କ ଇଚ୍ଛାରେ କେଞ୍ଚୁ ମାଟି ମା' ସେବକ
ଜୀବନ ତା କରିଅଛି ସେବାରେ ସାର୍ଥକ । ୨୨ ।

ଖରା ବର୍ଷା, ନାଳ, ଘାସ ପଡ଼ିଆ, ପାହାଡ଼
ସବୁଠାରେ କେଞ୍ଚୁ ବାସ ଚତ୍ତର କୋରଡ଼ । ୨୩ ।

ଅମର ବର ଲଭିଛି ଦେଲେ ମହେଶ୍ୱର
ଲାଞ୍ଜ ଛିଡ଼ଗଲେ ପୁଣି ହୋଇବ ବାହାର । ୨୪ ।

କେଞ୍ଚୁଆ ଲଙ୍ଗଳ ପୁଣି କେଞ୍ଚୁଆର ସାର
କେଞ୍ଚୁଆ ଔଷଧ ଖାଦ୍ୟ ମାଂସ ଦରକାର । ୨୫ ।

ଅଥଃ ପ୍ରଥମ ଭାଗ ପରି ସମାପ୍ତି
ଦ୍ୱିତୀୟ ଭାଗ କେଞ୍ଚୁକ ଜନକଲ୍ୟାଣ ରହସ୍ୟ ଶୁଭାରମ୍ଭଃ ।

ପୃଥିବୀ ପୃଷ୍ଠରେ ଛଅ ହଜାର
ଭାରତରେ ପୁଣି ଦୁଇ ହଜାର ।
ଜିଆ ଅଛନ୍ତି ଏତେ ପ୍ରକାର
ସ୍ଥାନ କାଳପାତ୍ରେ କାହା ବେଭାର ।
କଳା ମୁଣ୍ଡିଆ କେ ନାଲି ମୁଣ୍ଡିଆ
କଣ୍ଟା କଣ୍ଟା ଜିଏ ନାଳ ନାଳୁଆ ।

ଦିନ ରାତି ଚଷୁଥାଇ ଭୂତଳେ ଲଙ୍ଗଳ ହୋଇ
ପବନ ନେଆନେ ପାଣି ସଞ୍ଚେ
ପୋଟାସ ଯେ ଯବକ୍ଷାର ଫସଫେଟ୍ ଯେତେ ସାର
କାଲସିୟମ ଆଦି ସବୁ ବିଞ୍ଚେ ।
ମାଟି ହୋଇ ଯେ ମାଟୁଆ ହାଲୁକା ରସରସିଆ
ବଢ଼ାଏ ଗଛକୁ କେତେ ଗୁଣ
ସେଥିପାଇଁ ଜିଆଗଲା ମାଟି ଦେଖି ଚିହ୍ନିବାକୁ
ଜମି—ଏତ ଦନାଇବଚନ ।

ଏଥୁ ଅନନ୍ତେ ଶୁଣନ୍ତୁ ଜିଆ ଭେଜ୍ୟ କଥା
ଜିଆ କରିଛି ସାର, ଔଷଧ ବ୍ୟବସ୍ଥା ।

ଜିଆ ମାଳରେ ଚିଙ୍ଗୁଡ଼ ଧର
ବନିସୀ କଣ୍ଟାରେ ଜିଆଟି ଲେଡା ।
ମାଛ ଦେଖି ଆସେ ଲାଳ ଗଡାଇ
ଜିଆ ଲୋଭେ ଦୁଃଖ ଆପେ ଧରାଇ ।
ପିମ୍ପୁଡ଼, ଜହା, କଙ୍କଡା ଭାଇ
ଜିଆ ଖାଇବାକୁ ହାଣ୍ଡିପାଠ ।
ବଗ ବଣି ଆସି ଚଡ ଷକାଳୁ
ଧ୍ୟାନ କରୁଥାନ୍ତି ଜିଆ ଚାହାଁକୁ ।
ଜିଆର ଲଙ୍ଗୁଡ଼ ମାଟି ଉପରେ
ମୁଣ୍ଡଟି ଥାଏ ଯେ ମାଟି ଭିତରେ ।
ସକାଳୁ ଥଣ୍ଡାରେ ଓଲଟିପଡ
ମାଟି ଖୋଳୁଥାଏ କେଞ୍ଚୁଆ ଡାଙ୍ଗ ।
ବଣୀ ବଗ ସାଜି ସାଧୁପୁରୁଷ
ଥଣ୍ଡରେ ଟାଣନ୍ତି ଜିଆର ଶେଷ ।
ଜିଆ ଯେ ଅମର ଲାଞ୍ଜଟି ଛିଡେ
ଜିଆ ଲାଞ୍ଜଖାଇ ବଗୁଲି ଗଲେ ।
ଗୋଡୁଲାଞ୍ଜ ଧରି ଗଙ୍ଗା ଦୋହନ୍ତପାରି
ଜିଆ ଲାଞ୍ଜ ଧରି ଜୀବନତରୀ ।
ମାଛ କୁକୁଡାଙ୍କ ଲୋଭନୀୟ ଖାଦ୍ୟ
ଦିନ ପନ୍ଦରରେ (ପୁଣି) ଲାଞ୍ଜଟି ଭେଦ୍ୟ ।
କୁକୁଡା ବିହୁନେ ବୁଢୀ ଛେଳି ମାଂସ
କଚ୍ଛପ, ମଣ୍ଡୁକ ଏବେ କେଞ୍ଚୁଆରସ ।

ଶୁଣନ୍ତୁ କେଞ୍ଚୁଆ ଔଷଧ କଥା
ମାଟି ତଳେ ଅଛି ତା'ର ବ୍ୟବସ୍ଥା ।
କଦଳୀରେ ଜିଆ ଭରି ଖାଇବ
ପ୍ଲିହାରୋଗ ଭଲହୁଏ ଜାଣିବ ।
ଦାନ୍ତ ପୋକଖିଆ ଆଉ ବସନ୍ତ
ଜିଆବଟା ପାଣି ବିଷ ନାଶକ ।

ସାପ ସଙ୍ଗେ ଖେଳି ଖେଳି ନେଉଳ,
ସାପଶ୍ରେଟେ ହୋଇଯାଏ ପାଗଳ ।
ଧାଇଁ ଧାଇଁ ଯାଇ ଜିଆ ଖୋଳଇ,
ଖାଇ ସର୍ପ ବିଷ ନାଶ କରଇ ।
କେଶ, ଦୁଗ୍ଧ, ସୌନ୍ଦର୍ଯ୍ୟ ବର୍ଦ୍ଧକ,
ମୂତ୍ରାଶୟରେ ପଥର ନାଶକ ।
ଜିଆ ଅଉଷଧି ଜିଆ ଡାକ୍ତର,
ଜିଆକୁ ଜୀବନେ କେତେ ବ୍ୟବହାର ।
ଜିଆ ଟଳାରୁ ମାଟି ପ୍ରକାର,
ଜିଆ ଥୋପରୁ ମାଛ ବେପାର ।
ଜିଆ ଖିଆରୁ ମଇଳା ସାର,
ଜିଆକୁ ବଂଶୁଅ ତାକୁ ନ ମାର ।
ବାଡପାଖେ କରି କେଞ୍ଚୁଆ ଚ୍ଛଷ,
ଖତସାର, ଅଉଷଧ ଓ ମାଂସ ।
କେଞ୍ଚୁଆ ରଜା ହୋଇଲେ ପ୍ରସନ୍ନ,
ମାଟି ମା ଢାଳି ଦେବେ ଯେ ଅନ୍ନ ।

ଚ୍ଛଷରେ ଔଷଧ କୃତ୍ରିମ ସାର,
ଏସବୁ କେଞ୍ଚୁଆ ପାଇଁ ଜହର ।
ଖତ, ପିଡ଼ୁଆ ଓ ସବୁଜସାର,
ଭୂତଳ ବନ୍ଧୁଙ୍କ ବଂଶବିସ୍ତାର ।
ଆମେରିକା ଫିଲିପାଇନ୍ ଦେଶ,
ଆଉ କେତେ କେତେ ଦେଶ ବିଦେଶ ।
କେଞ୍ଚୁଆ ସାରରେ କଲେଣି ଚ୍ଛଷ,
କେଞ୍ଚୁଆ ଜମିରେ ଅଧିକ ରସ ।
ଚ୍ଛଷୀଭାଇ ଆଉ ନ କରି ମଠ,
ଚ୍ଛଷରେ ଲଗାଅ କେଞ୍ଚୁଆ ପାଠ ।

—୦—

## 'ମାନବ-ଜୀବନ'

ସନ୍ତୋଷ କୁମାର ଦେବତା

ତେଲ ସରିଗଲେ ପ୍ରଦୀପ ଯେସନେ
ଏଧନ ସଂପତ୍ତି ଜାଳି ରହିବନି
ତେବେ ଅମୂଲ୍ୟ ସଂପଦ କଣ ?
ସୁହୃଦୟ ଓ ସତ୍ ଚରିତ୍ର ଏକ ଅମୂଲ୍ୟ ବିଭବ
ଜୀବନ-ପୁଷ୍ପରେ
ଚରିତ୍ର ସୁମଧୁର ସୁରଭ
ସୁରଭି ନ ଥାଇ ଦିଶିଲେ ସୁନ୍ଦର
ନ କରନ୍ତି କେହି ଆଦର
ଜୀବନ-ପ୍ରଦୀପରେ
ଚରିତ୍ର ଉଜ୍ଜଳ ଜ୍ୟୋତି ।
ତେଣୁ ବୃଥା ଗର୍ବ ଅହଂକାରମାନ
ମୂର୍ଖବ୍ୟକ୍ତିର ପରିଚୟ
ଗର୍ବୀବ୍ୟକ୍ତି ସ୍ରୋତସ୍ୱିନୀପରି
କୂଳଯାଏ ଲଂଘି
ମିଥ୍ୟାଜାଲ-ପ୍ରୟାଣରେ
ହୋଇଯାଏ ରୁଦ୍ଧି
କର୍ମବିନା ମନୁଷ୍ୟ ଜୀବନ
ଲାଙ୍ଗୁଳବିହୀନ ପଶୁପରି
ଅବହେଳିତ ପ୍ରାଣୀ
ଭାଗ୍ୟର କରାଳ ବାତ୍ୟାରେ
ମଇଳା ଦାଣ୍ଡରେ ଭିକ୍ଷୁକ ସାଜେ ।
ପ୍ରାଚୁର୍ଯ୍ୟ ଲୋଡ଼ାନାହିଁ
ଲୋଡ଼ାନାହିଁ ଆଭିଜାତ୍ୟ
ପରିଧାନ କରନାହିଁ
କୃତ୍ରିମ ପୋଷାକ

ହେ ମାନବେ ! ଜାଣିରଖ—
ନୈରାଶ୍ୟର ବାରିଝଡ଼େ
ତୁମ ଆଶା-ଫୁଲ
ବିକ୍ଷତ ହୋଇ ମଉଳିବ ।

ଯାଜନାହିଁ ତୁମେ
ଖୁନୀ ଆତତାୟୀ
କାମନାର ତଣ୍ଟି ଚିପି
ଯନ୍ତ୍ରଣାକୁ ଡାକନାହିଁ

ଜୀବନ ହେବ ସରସ ସୁନ୍ଦର
ସଂସାର ମୋହମାୟା
ତ୍ୟାଗକରି ଜୀବନ ବିତାଅ
ଅହିଂସା ରଥେ ଚଢ଼ ।

ଏ ମହା ସଂସାର ସାଗରେ
ଉପମାନ ନଉକା
ଭସାଅ ଗଭୀର ଗର୍ତ୍ତରେ
କିନ୍ତୁ ନିଃସ୍ୱତାରେ ପୂର୍ଣ୍ଣହେବ
ମିଶି ମହାଶୂନ୍ୟ

ମାନବ-ଜୀବନ
ଉବରୁ ଅଉବକୁ
ଅଉବରୁ ଉବକୁ
ଗତିକରେ ଭଲର ସନ୍ଧାନେ

ସବୁ କିନ୍ତୁ ବ୍ୟର୍ଥହୁଏ..... ....।
ମାନବ ଜୀବନେ
ଫୁଟେ ନାହିଁ ପଦ୍ମ
ମାନବ ଜୀବନାକାଶରେ
ଉଠେ ନାହିଁ ଚନ୍ଦ୍ର ।

## ଜୀବନାଶ୍ରମ

ଗରିବ ଓଡଆ ହୁରିପଡେ ଦେଶେ
ରାଇଜେ ସଂପଦ ଠୁଳ,
ଭାବଇ କି ଆଜି ଓଡଆ ପଣ୍ଡିତ
କେଉଁଠି ସମସ୍ୟା ମୂଳ ।
ପଣ୍ଡିତ କହନ୍ତି ସୋନପୁର ରାଜ୍ୟେ
ଥିଲା ଲଙ୍କାର ରାବଣ,
ଆମ କାରିଗର ଗଢ଼ିଥିଲେ ତୋଧେ
ତାହାର ପୁଷ୍ପକଯାନ ।
ଆଜି ପର ଘଇ ବିଦେଶୀ ଉଡ଼ାନ୍ତି
ସୂର୍ଯ୍ୟ କିରଣୁ ଜାହାଜ,
ତ୍ରେତୟା ଯୁଗରେ ଥିଲା କି ପେଟ୍ରୋଲ
ଦିଇ ତା ପୁଷ୍ପକ ସଜ ।
ଏଇ ରାଇଜରେ ଅଛି ରାମଗିରି
ଦଣ୍ଡକା ଗନ୍ଧମାର୍ଦ୍ଦନ,
ଅଛି ଯୁବଳୟା ସୁଗ୍ରୀବ ଅନ୍ତକ
ହନୁଲଙ୍କେ ନିଆଁ ଦିନ ।
ଏ ରାଇଜେ ଅଛି ବିଶଲ୍ୟକରଣୀ
ନେଇଥିଲା ହନୁ ତାଡ଼,
ଲିଭିଯାଇ ଅଛି ସେଇ ଗଉରବ
ଗରିବ ଓଡଆ ହୁରି ।
ଏଇ ରାଇଜକୁ ଭରତ ସମରେ
ଯାଇଣ ନିଷାଦ ରଜା,
ଭରତ ପୁରାଣେ ଲେଖା ଅଛି ଯାହା
ସେ କଥା କି ଆଜି ଖୋଜା ।
ବ୍ରୋଞ୍ଜ ଯୁଗର ଓଡଆ ସଭ୍ୟତା
ସଂସ୍କୃତି ସାହିତ୍ୟ ଧାର,
ଆର୍ଯ୍ୟ ସଭ୍ୟତାରେ କି ଥିଲା ଏ ରାଜ୍ୟ
ମଧ୍ୟ ଯୁଗେ କେଣେ ଗଲା ।

ଥିଲେ ଏ ରାଇଜେ ସାଧବ ଯେତେକ
ଦରିଆ ପାରିକୁ ଯାଇ,
ବୋହି ଆଣୁଥିଲେ ବିଦେଶୁ ସଂପଦ
ଦାୟାଦ୍ କେହିକି ନାହିଁ ।
ଚଣ୍ଡାଶୋକ ପର ଧର୍ମାଶୋକ ହେଲା
ଧଉଳିରେ ଅଛି କଥା,
ପାଇକ ତରବେ ଏଇ ମାଟିପରେ
ନଇଁଲା ଯବନ ମଥା ।
ରାଜଦ୍ରୋହୀମାନେ ଆଣିଲେ ଯବନ
ଇଂରେଜ ତାଙ୍କରି ଲାଗି,
ନିଜ ଘରଭଙ୍ଗି କୁମ୍ଭୀର ଡ଼ାକିଲେ
କି କରେ ପାଇକ ବଗି ।
ଗଲା କଥା ସବୁ ଯାଇଛି ତ ଗଳି
ଧାରି ହେଲେ ବୋଝ ମୁଣ୍ଡେ,
କିପରି ଜୀଇବେ ଗରିବ ଓଡ଼ିଆ
କାମ କରି ପର ଦାଣ୍ଡେ ।
ବୁଣୁଥିଲେ ଯିଏ ପାଟ ମଠା ଏବେ
ସହରେ ବିକନ୍ତି ଅଣ୍ଡା,
ଖୋଳୁଥିଲେ ଯିଏ ପଥରେ ଜୀବନ
ନିହାଣ ତାଙ୍କର ମୁଣ୍ଡା ।
ଯୋଗାଉଥିଲେ ଯେ ବଣୁ ଫଳମୂଳ
କାଠ ଲାଖ ମହୁନୀର,
ତାଙ୍କ ଛବିପଟୁ ଜଙ୍ଗଲ ସରିଲା
ହୁଅନ୍ତି କଙ୍କାଳସାର ।
ଫୁଟାଉଥିଲେ ଯେ ମାଟି ମୁହେଁ ହସ
ଯାଆନ୍ତି ଦାଦାନ ହୋଇ,
ଛୁହା ବଗିଚ୍ଛ ଓ ଚଟକଳ କାମେ
ପର ଓଳି ତଳେ ରହି ।
ଶଢୁଥିଲେ ଯିଏ କଂସାର ବାସନ
ତାରକସି ଯା ବେଉସା,

ଯନ୍ତ୍ର ସଭ୍ୟତାରେ ବଳଗଲା ଘର୍ଙ୍ଗ
ଛୁଟିରେ ପିଅନ୍ତ ନିଶା ।
ଓଡ଼ିଆଙ୍କ ଏବେ କି ବେଳ ପଡ଼ିଚି
ଝଗଡ଼ା ଭାଇ ଓ ଦାଦା,
ସେଇ ମଉକାରେ ଅଣ ଓଡ଼ିଆଏ
ରଇଜେ ହୁଅନ୍ତ ଦାଦା ।
ଠାକୁର ରଇଜ ଠାକୁର ମଣିଷ
ସହଇ ଅଯଥା ଦଣ୍ଡ,
ବିଶ୍ୱାବସୁର ଯେ ବଂଶଧର ଥିଲା
ଗଣନାରେ କମେ ମୁଣ୍ଡ ।
ରଇଜ ବାସୀଙ୍କ ଦୋଷ ନାହିଁ କିଛି
ଦୋଷ ତ ପଣ୍ଡିତଙ୍କର,
ମାକୋଲେ ସାହେବ ଶିଖାଇଛି ଭବ
ପଣ୍ଡିତଙ୍କୁ ଲାଗେ ସାର ।
ଓଡ଼ିଶା ସାରା ତ ହୋଇଲା ଛାଉଣୀ
ସ୍କୁଲ କଲେଜ କାର୍ଖାନା,
ପାଠ ପରୀକ୍ଷାକୁ ବେଳ ମିଳୁନାହିଁ
ପରିଶ୍ରମକୁ ବିମନା ।
ପାଣି ମାଡ଼ିବାକୁ ବନ୍ଧ ଗଢ଼ାହୁଏ
ସବୁଠି କେନାଲ ହେବ,
କେନାଲ ପ୍ରଭାବେ ବଣ ସରିଗଲେ
ବନ୍ଧୁଆ ସିନା ମରିବ ।
ବନ୍ଧ ଇତିହାସ ଜାଣିନେ କି ଆମେ
କେଉଁ ଘଟଣାର କଥା,
ହୀରାକୁଦେ କେତେ ମାଟି ଧୋଇ ପଶେ
କାହାର ସେ ମୁଣ୍ଡ ବାଥା ।
ବରଷା ପାଣିରେ ମାଟି ଧୋଇ ପୋତେ
ହ୍ରଦ, ବନ୍ଧ ଓ ଗାଡ଼ିଆ,
ଗରିବ ଅବସ୍ଥା କିଏ ବା ଦେଖୁଛି
ଯୋଜନା ବଡ଼ ବଡ଼ିଆ ।

ପରିବେଶ ଉନ୍ନୟନ ଯୋଜନାରେ
ଲାଗେ ସାଗୁଆନ ଗଛ,
ଲଣ୍ଡା ପାହାଡ ଓ ବାଲି ପୋତା ନଈ
ସବୁ ସଂପଦ ଗଇଜୁ ।
ଏପରିରେ ଭାଇ ନୋହିବ ବିକାଶ
ବିକାଶ ଅଲଗା କଥା,
କିଏ ଅବା ସେଇ ମନ୍ତର ଫୁଙ୍କୁଚି
ଗରିବର ପେଟ ବ୍ୟଥା ।
ଗଇଜରେ ଯେତେ ଜମି ଅଛି ତାହା
ହରି କୃଷକଙ୍କ ମୁଣ୍ଡେ,
ଚାକିରୀଆ ଆଉ ବେପାରୀ ଭାଇଙ୍କୁ
ମିଳିଯାଉ ଭାଗଖଣ୍ଡେ ।
ନଦୀ ହ୍ରଦ ବନ୍ଧ ଗାଡଆର ପଟା
ମାଛୁଆ ନାଉରୀ ଭାଇ,
ବଣୁଆ ଲୋକଙ୍କୁ ଜଙ୍ଗଲର ପଟା
ଶାସକେ ଦିଅନ୍ତୁ ଯାଇ ।
ଇଟା ଭଟି ଆଉ ଖଣି ପଟା ନେଇ
ଠିକାଦାର ଖୋଳି ମାଟି,
ସରକାର ପାଖେ ଚୁକ୍ତି ଲେଖି ଦେବେ
କରିବେ ପୋଖରୀ କାଟି ।
ଜନ ଜୀବନର ଉନ୍ନୟନ ପାଇଁ
ନ ଗଢ଼ି ଗଉରକେଲା,
ସବୁ ପଞ୍ଚାୟତେ ଛୋଟ କାରଖାନା
ଲଟାଇ ଜୀବନ ଲୀଳା ।
ବଡ କାରଖାନା ଯେତିକି ବସିବ
ଜୀବନ ସେତିକି ଯିବ
ଗଉରକେଲାର ଡାକ୍ତର ଲେଖନ୍ତି
କୋକ୍ଓଭେନ ପ୍ରଭବ ।

କାରଖାନା ନୁହେଁ ସମାଧାନ ପନ୍ଥା
ମୂଳ ଯେ ଶିକ୍ଷା ଗଠନ,
ଦଶ ନୀତି ଦଶ ସଂପଦକୁ ବୁଝି
ଦଶ ପଦାର୍ଥର ଜ୍ଞାନ ।
ପାଇବା ପାଇଁକି ଏହି ଶିକ୍ଷା ଭଳି
ବସାଇ ଜୀବନାଶ୍ରମ,
ରହନ୍ତୁ ସେଠାରେ ଦଶଗୁରୁ' ମା
କରନ୍ତୁ ଜୀବନ କାମ ।
ନୀତି ପଠାଇବେ ମା ଗୁରୁଦୁଇ
କୃଷି ପଢାଇ ଦି ଜଣ,
ସ୍ୱାସ୍ଥ୍ୟ ପଢାଇବେ ଦୁଇ ଗୁରୁ ମା
କ୍ରୀଡାରେ ଦିଆଇ ମନ
ରବିଗୁରୁ ରବି ମା'ଆଙ୍କର କାମ
ରହିଲେ ଦି ଜଣ ଆଉ
ଗୁରୁ ଶିଖାଇବେ ହସ୍ତକର୍ମ ଘର
ମାଆଙ୍କ ଘରରେ ଥାଉ ।
ସମାନ ସଂଖ୍ୟାରେ ବାଳକ ବାଳିକା
ଆସିବେ ଆଶ୍ରମେ ପଢି,
ଦଶବର୍ଷ ପାଠ ଏପରି ହୋଇବ
ମା କୋଳେ ପାଠକୁ ମୋଢ଼ ।
ଯୁକ୍ତ ଦୁଇ ବେଳେ ବାଳକ ବାଳିକା
ବାଛିବେ ବୃତ୍ତି ପସର,
ପଢିଥିବା ପାଠ କାମରେ ଲଗାଇ
ଶିଖିବେ ବିଷୟର ଧାର ।
ଯୁକ୍ତ ତିନି ଆଉ ସ୍ନାତକ ଉତ୍ତରେ
ପାଠ ବାଛିବେ ଖୁସିରେ,
ଗୁରୁ ମା' ଅବା ସ୍ଥଳକ ହେବାକୁ
ଫେରିବେ ସମାଜ ଦ୍ୱାରେ ।
ଗାଁଉଲିଆ ପିଲା ସହର ଆସିବେ
ଗାଁକୁ ସହରୀ ପିଲା,

ଏ ନୀତି ଚଳିଲେ ଜୀବନର ପେଚ
ହୋଇ ନ ପାରିବ ଢିଲା ।
ଏହିପରି ପାଠ ଏଇ ଆଶ୍ରମରେ
ଜୀବନ ପ୍ରଗତ ପାଇଁ,
ଗଢନ୍ତୁ ସମାଜେ ବିଦ୍ୟାଳୟ ଯିଏ
ଦେଖନ୍ତୁ ନିଜେ ବସାଇ ।

ଜୀବନ ବାଦୀ

—o—

## ପାଠୁଆ ଭାଇ

ପାଠୁଆ ଓଡଆ ଭାଇ ଚିନ୍ତା କରେ ବସି,
କି କରିବି ପାଠପଢ କାମ ନାହିଁ କିଛି ।
ଚଳିବା ପାଇଁକି ଲୋଡା ଅର୍ଥ ଯେ ମୋହର,
କିପରି ହେଲେ ମାସକୁ ନ ହେଲେ ହଜାର ।
କେଉଁଠୁ ଏତେ ପଇସା କରିବି ଯୋଗାଡ,
ଚାକିରୀ କଲେ ଜେଜାଣି ଦୁଃଖ ଯିବ ମୋର ।
ତା ପରେ ଲାଗିବି ମୁହିଁ ବି ପଇସା ପାଇଁ,
ହାଜିର ଖାତାରେ ଦେଇ ହାଜିର ପକାଇ ।
ଓଭର ଟାଇମ୍ କରି ନେବି ଯେତେ ଟଙ୍କା,
ଅସାଧୁ ବ୍ୟବସାୟୀଙ୍କୁ ଦେବି ବନି ଚୋକା ।
ବଜାରେ ପରିବା ନେଳି ରଙ୍ଗରେ ବୁଡାଇ,
ବିକନ୍ତି ଯେ ତାଙ୍କୁ ଥଳି ଦେବି ମୁଁ ଦେଖାଇ ।
ସହର ପବନେ ଯେତେ ଧୂଳି ଆଉ ବିଷ,
ନାକ ବାଟେ ଶୋଷିବାକୁ ଯିବି ମୁଁ ଅବଶ୍ୟ ।
କାରଖାନା ନ ହେଲେ ନ ଚଳେ ଜୀବନ,
କିଏ ବା ବୁଝୁଛି ଆଜି ସଂପଦ ଦର୍ଶନ ।

ଘରକୁ ନ ଦେଖି ଲୋକେ ଶିଖାନ୍ତି ପରକୁ,
ଘର ଛାଡ଼ ଉଡ଼ଯାନ୍ତି ସୁଖେ ସହରକୁ ।
ଦଶ ବର୍ଷ ବହି ଘୋଷି ମାଟ୍ରିକ୍ ପାରିଲି,
କଲେଜରେ ଛବିବର୍ଷ ଆନନ୍ଦେ କାଟିଲି ।

ବିଶ୍ୱବିଦ୍ୟାଳୟ ନେଲା ତିନିଟି ବରଷ,
ପହଞ୍ଚିଲି ସମାଜରେ ହୋଇ ମୁଁ ହରଷ ।
ଖୋଜିଲି ଚାକିରୀ କେତେ ପଢ଼ିଲି ପେପର,
ଦରଖାସ୍ତ ସାକ୍ଷାତରେ ସରିଲା ମୋ ବେଳ ।
ନ ମିଳିଲା କିଛି ମୋର ବ୍ୟାକିଙ୍ଗ୍ ଯେ ନାହିଁ,
କି ଉପାୟ କରିବି ମୁଁ ଭାବି ନ ପାରଇ ।
ଅଧ୍ୟାପକ ହେବା ପାଇଁ ମନଥିଲା ଭରି,
କିମ୍ବା କୌଣସି ଚାକିରୀ ହେଲେ ସରକାରୀ ।

ଭେଟିଲି ମୁଁ ଅଫିସର କେତେ ଯେ ମନ୍ତ୍ରୀଙ୍କୁ,
କେହି ଟିକେ ନ ବୁଝିଲେ ମୋ'ର ଅବସ୍ଥାକୁ ।
ଦିନ ଗଡ଼େ ପାଣିପରି ସରିଯାଏ ବେଳ,
ଦିନୁ ଦିନ ସମସ୍ୟା ମୋ ହେଉଛି ପ୍ରବଳ ।

କହିଲେ ବନ୍ଧୁଏ ମୋତେ କରତୁ ବେପାର,
ଟଙ୍କା ଉଡ଼େ ପବନରେ ଯେତେ ପାର ଧର ।
କି ବେପାର କଲେ ହେବ ମୁନାଫା ପ୍ରଚୁର,
ସେ କଥା ବୁଝିଲି ଧାଇଁ ଗଲା କିଛି ବେଳ ।
କେତେ ଠିକାଦାର ଶିଳ୍ପପତି ଓ ଦୋକାନୀ,
ବୁଝାଇଲେ ବହୁ କଥା ମୋର ମନ ଜାଣି ।
ଦି ନମ୍ବର କାମ ପାଇଁ ମିଳିଲା ସୁବିଧା,
ନ କରିଲି ମାନି ମୁହିଁ ଆଇନର ବାଧା ।
କାଠ କୋଇଲା ଓ ଇଟା ପଥର ବେପାର,
କରିବାକୁ କିଛି ଦିନ ହେଲି ତରବର ।
ନ ମାନିଲା ମନ କାହିଁ ଦୁଶ୍ଚିନ୍ତା ଶିକାର,
ହୋଇ ମୁଁ ଭାବିଲି ଦିନେ ହୋଇବି ମାଷ୍ଟର ।

ସେକ୍ରେଟାରୀ ମାନଙ୍କର ପଛରେ ଗୋଡ଼ାଇ,
ମିଳିଲା ନାହିଁ ସୁଅରେ କୁଟାଖଣ୍ଡେ କାହିଁ ।
ପାଠୁଆ ବେକାର ପାଇଁ ବ୍ୟାଙ୍କ୍ ଟଙ୍କା ନେଇ,
ଖୋଲୁଛନ୍ତି କାରଖାନା ଉତ୍ପାଦନ ପାଇଁ ।
ବ୍ୟାଙ୍କ୍ ପରେ ବ୍ୟାଙ୍କ୍ ଯାଇ ଦେଖିଲି ମୁଁ ବୁଲି,
ତେଲିଆ ମୁଣ୍ଡରେ ତେଲ ଢଳାଯାଏ ଖାଲି ।
କେ କହେ ଗାଈ କୁକୁଡ଼ା ରଖିପକା ଭାଇ,
ମିଳିଯିବ ଯାହା କିଛି ଚଳିଯିବୁ ତୁହି ।
କହିଲେ ଥୋକାଏ ବସି ଲେଖିପକା ବହି,
ମନ ଭିତରର କଥା ପଦାରେ ପକାଇ ।
କିଣିବେ ବହୁତ ଲୋକ ପାଇବୁ ପଇସା,
କିଛି ପାଇଗଲେ ତୋର ମେଣ୍ଟିବ ଦୁର୍ଦ୍ଦଶା ।
ଧରି ମୁଁ କଲମ କେତେ କାଗଜ ଲେଖିଲି,
ଛାପାଖାନା ବୁଲି କିଛି ଦିନ କଟାଇଲି ।
ଚାଲିଛି ମୁଁ ଚାଲିବାତ ଜୀବନର ନୀତି,
ଦେହ ମନେ ସୃଷ୍ଟି କରି ନୂତନ ଶକତି ।
କେତେ ଦିନ ଚାଲିବାକୁ ପଡ଼ିବ ଏପରି
ଭାବିଲେ ଘୂରାଏ ମୁଣ୍ଡ ବସେ ଥକାମାରି ।
ପିଲାଦିନୁ ଶିଖିଥାନ୍ତି ଯଦିକିଛି କାମ
ଉବୁଛି ଅରଜି ଥାନ୍ତି ସମାଜେ ସୁନାମ ।
ସବୁ ଆଡୁ ବିଫଳ ହୋଇଲି ଯେଣୁ ମୁହିଁ,
ସେବା ସଙ୍ଗଠନେ ନାମ ଲେଖାଇଲି ଯାଇ ।
ଲୋକେ କହୁଛନ୍ତି ଏବେ ମୁଁ ପର ସେବକ,
କେ ଅବା କହନ୍ତି ମୁହିଁ ସାଜି ଧର୍ମବକ ।
ବୁଲୁଛି ସମାଜେ ଯେବେ ଭଗା ଭଲ ଥିବ,
କେଉଣ୍ଟିଟାଏ ଗୁହ୍ଛିଲେ ବାଳିଆ ମିଳିବ ।
ଏ ପରି କଟେ ମୋ ଦିନ ଶିକ୍ଷିତ ମୁଁ ବୋଲି,
ପାଠପଢ଼ା ବିରୁଦ୍ଧରେ ବୁଝାଉଛି ବୁଲି ।
ଶିକ୍ଷାରେ ଆମର ଯେତେ ଅଛି ବ୍ୟତିକ୍ରମ,
ବଦଳାଇ ଦେବା ତାକୁ ଆମର ଧରମ ।

ବିଦ୍ୟାଳୟ ନ ଥିବାରୁ କରମ ଅଭ୍ୟାସ,
ଭୋଗୁଛି ମୁଁ ଦୁଃଖ ଏହା ନୁହେଁ ମୋର ଦୋଷ ।
ଅବସ୍ଥା ମୋହର ଥରେ ବିଚାରକୁ ନେଇ,
ନିଜର ପୁଅଝିଅଙ୍କୁ ଶିକ୍ଷା ଦିଅ ଭାଇ ।

—୦—

## ଘଣା

ଶ୍ରୀ ଆର୍ତ୍ତବନ୍ଧୁ ମିଶ୍ର
ଜ୍ୟୋତିବିହାର ବୁର୍ଲା-୭୬୮୦୧୭

( ୧ )

ଦେଶେଯାକେ ଗଣତନ୍ତ୍ର ଘଣା,
ପେଶିବାକୁ ସମାଜରେ ଗଣ ଦୁଃଖର ରାଶି ।
ବାହାରିବ ସେ ରାଶିରୁ ଯେତେ ତେଲ,
ଦେବା ପାଇଁ ଗଣମୁଣ୍ଡେ ଘଷି ।
ଗଣର ଲୁଖୁରା ମୁଣ୍ଡ ଖଟିଖିଆ,
ପିଏ ମଦ, ତାଡ, ରସ, କୁସୁନା ତୋଡ଼ାଣି ।
ଯାହାର ତେଲିଆ ମୁଣ୍ଡ ତା ନିମନ୍ତେ,
ତନ୍ତ୍ର ପେଶେ ବେଶି ତେଲ ଜାଣି ।
ଗଣ ପର ଏ ଘଣାର ପିଢ ଖଣ୍ଡ,
ପେଷଣରେ ତନ୍ତ୍ରୀ ମନ୍ତ୍ରୀ ଯନ୍ତ୍ରୀ ରହିଛନ୍ତି ।
ସେମାନେ ତ ବୁଲୁଛନ୍ତି ନିଜପାଇଁ,
ଗଣ ଖଣ୍ଡ ଖଣ୍ଡ ହୁଏ ତାହା ନ ଦେଖନ୍ତି ।
ଗଣକୁ ଯୋଡିବା ପାଇଁ ସମାଜରେ,
ବାଜେ କେତେ ଶିକ୍ଷାନୀତି ପ୍ରଗତି ବାଜଣା ।
ପେଡିବାକୁ ଉନ୍ନୟନ ତେଲ ମଞ୍ଜି,
ଗଣ ନାମେ ତନ୍ତ୍ର ପାଏ ବହୁତ ପାଉଣା ।

ତେଲ ଓ ପିଢ଼ଆ ଯାକ ଗଣ ମଧ୍ୟେ,
ବାଣ୍ଟି ଦେଇ ସମବାୟ ନିୟମ ନୀତିରେ ।
ପ୍ରଗତି ଆଣନ୍ତ କିବା ସମାଜରେ,
ମନ୍ତ୍ରୀ ତନ୍ତ୍ରୀ ଯନ୍ତ୍ରୀମାନେ ଗଣ ସାହାଯ୍ୟରେ ।
ତନ୍ତ୍ରରେ ପଶନ୍ତି ଯିଏ ଭଗ୍ୟ ବଳେ,
ବ୍ୟାକିଙ୍ଗ୍ ବା ନିଜର ଚେଷ୍ଟାରେ ।
ପାଆନ୍ତ ପ୍ରତିଷ୍ଠା ସିଏ ସମାଜରେ,
ସେ ପ୍ରଭବେ ଗଣ ଦୁଃଖ ବଢ଼େ ।
ଗଣର ଦୁର୍ଦ୍ଦଶା ଦିନେ ସରିଯିବ,
ଉଠିବ ଯେ ଯେତେବେଳେ ଚେଇଁ ।
ଦେବ ଶିକ୍ଷା ତନ୍ତ୍ର ବାସୀ ଶୋଷକଙ୍କୁ,
ସମାଧାନ ବେଶି ଦିନ ନାହିଁ ।

( ୨ )

ତନ୍ତ୍ରେ ପୁଞ୍ଜିପତି ବୁଦ୍ଧିଜୀବୀ ନ୍ୟାୟୀ,
ନିଜ ଗୋଡାଣିଆ ଶାସକେ ନେଇ ।
ବାକି ଲୋକତନ୍ତ୍ର ଗଣରେ ଥାଆନ୍ତି,
ତନ୍ତ୍ର ପ୍ରଭବର ବୋଝ ଉଠାଇ ।
ଯେତେକ ମୂଲିଆ ଚଷା ଖଟିଖିଆ,
ଘଣା ପିଢ଼ ଖଣ୍ଡ ପର ସେମାନେ ।
ତାଙ୍କରି ଦାନରେ ତନ୍ତ୍ରଟା ଚଳୁଛି,
ବୁଦ୍ଧିଜୀବୀ ବସି ଖାଏ ବ୍ୟସନେ ।
ବୁଦ୍ଧିଜୀବୀ ନିଜ ବୁଦ୍ଧି ଧରି ଆଜ,
ବୁଲୁଅଛି ଘଣା ପେଷଣ ଖଣ୍ଡେ ।
ପିଢ଼ଟା ଦଦରା ଭଙ୍ଗି ଚୁନା ହେଲା,
ଏକଥା ନ ପଶେ ତାହାର ମୁଣ୍ଡେ ।
ଗଣ ସମାଜକୁ କରି ବିଖଣ୍ଡିତ,
ଚଳି ପାରିବ କି ଶାସକ ଘଣା ।
ଗଣ ଚେତନାର ଦ୍ୱାହି ଦେଇ ଶିକ୍ଷା,
ଯୋଗାଡ଼ଇ ସିନା ତନ୍ତ୍ର ପାଉଣା ।

ଖାଦ୍ୟ ବାସ ସ୍ୱାସ୍ଥ୍ୟ ଯୋଗାଡ଼ବା ପାଇଁ,
ଗଣ ବୁଲେ ଛାଡ଼ି ନିଜର ଘର ।
ଘରେ ରହିବାର ଆଇନ ନ ହେଲେ,
ବଦଳି ଯିବ କି ଦୁଃଖ ଗଣର ।
ଜୀବନ ଆଇନ ଚଳିଲେ ଦେଶରେ,
ଉତ୍ପାଦନ ହେଲେ ଗଣର କାମ ।
ବସିଖିଆମାନେ ଉଠି କାମ କଲେ,
ସମାଜ ହୋଇବ ସରଗ ଧାମ ।
ଗଣତନ୍ତ୍ର ଘଣା ପେଷଣ ଖଣ୍ଡରେ,
ରହିଛନ୍ତି ଯେତେ ଖଉଆ ଚୋର ।
ଧରି ତାଙ୍କ ତଣ୍ଟି କାମ କରାଇଲେ
ବଦଳିବ ଯାଇ ଦୁଃଖ ଗଣର ।
ଆନ୍ଦୋଳନ ଯଦି ତନ୍ତ୍ରର ଧରମ,
ବେତନ ବଢ଼ାଇ 'କଲମ ଛାଡ଼' ।
ଗଣ ପାଇଁ ଏଇ ଅସଲ ମଉକା,
ଉଠାଅ ଜୀବନ ସଂଗ୍ରାମ ସ୍ୱର ।
କାଗଜ କଲମ ଛାଡ଼ି ଉତ୍ପାଦନ,
କରିବାକୁ ହେଲେ ଆଇନ ଲେଖା ।
ମାନିବେ ସରବେ ନ ହେଲେ ଧରିବେ,
ଗଣ ସେନା ତାଙ୍କୁ ଦେଇଣ ଦେଖା ।
ଓଡ଼ିଆ ପାଇକ ଅଇତିହ୍ୟ ଯାକ,
ଇତିହାସେ ପରା ରହିଛି ଲେଖା ।
ଇତିହାସ କିଏ ପଢ଼େ ବା ପଢ଼ାଏ,
ଶିକ୍ଷକ ନୁହଇ ସମାଜ ସଖା ।
ନିଜଘର କଥା ପାଶୋରି ମଣିଷ
କେତେ ସୁଖେ କରେ ପରର କାମ ।
ଘରଛାଡ଼ି ପଡେ ସମ୍ପଦ ଯୋଗାଡ଼,
ବଞ୍ଚିବା ହୋଇଛି ବ୍ୟତି କରମ ।
ମାନବ ଜୀବନ ବ୍ୟତିକ୍ରମ ହେତୁ
ମରିବ ଅବା ସେ ଧରା ଉପରୁ ।

ବର୍ବର୍ନ ସୁଏ ଉଡବ ଆକାଶେ,
ରହିବ ଜଳରେ ଖାଇ ଭୂଇଁରୁ ।
ତିନିଜଗ ପର ମଣିଷ ହୋଇବ,
ଜଳ ସ୍ଥଳ ଆଉ ଆକାଶ ଚର ?
ମରିବେ କି ବହୁ ମଣିଷ ଧରାରୁ,
ମରିଥିଲେ ଯଥା 'ଡାଇନୋସର' ?
ମରିବନି ପର ସମୂଳେ ଧରାରୁ,
ମଣିଷଟା ବଡ ରୁଳକ ଜାତି ।
ଖାଦ୍ୟ ଜାଲ ଫାଶ କିଆଁ ଛିଣ୍ଡାଉଛି,
ଭୁଲି ଯାଇ ନିଜ ଜୀବନ ନୀତି ।
ଜୀବନ ନୀତିର ଶିକ୍ଷା ନ ମିଳିଲେ,
କରମ ନ ହେଲେ ଜୀବନ ପାଇଁ ।
'ନାଲିଫିତା' ବନ୍ଧା ଶୋଷଣ ସଂସ୍କୃତି,
ହୋଇପିବ ସାର ଦେଶରୁ ପଦା ।
ଦେଶେ ଆଜି ଚଳେ ବହୁତ ଯୋଜନା,
ଗଣକୁ କି ଲଭ ତହିଁରୁ ମିଳେ ।
ତନ୍ତ୍ରର କାମରୁ ତନ୍ତ୍ର ଲଭ ପାଏ,
ଗଣ ରହିଥାଏ ନିଜ ଦୁଃଖରେ ।

( ୩ )

ଏଥିପାଇଁ ଭଇ ଉଠି ଆଜି ଚେଇଁ ତନ୍ତ୍ରକୁ ଅନାଇ ଦେଖ ଏଥର,
ତୋ ପରେ ବୁଲନ୍ତ ମନ୍ତ୍ରୀ ତନ୍ତ୍ରୀ ଯନ୍ତ୍ରୀ ଶୋଷନ୍ତ ରକତ ବିସ୍ତାରି ଚେର ।
ସେ ଚେରକୁ ଭଇ ଉପାଡ ନଦେଲେ ନିଜେ ଭର୍ଗି ସିନା ଯିବୁ ତୁ ମରି,
ଦଶପାଞ୍ଚ ହୋଇ ମିଳିଗଲେ ତୋର କରମ ଶକତି ଯିବଟି ବଢି ।
ତନ୍ତ୍ରର ଋଳକି ବୁଝି ଶିକ୍ଷା ପାଇ ମାପି ନେଇ ନିଜେ ତନ୍ତ୍ର ପ୍ରଭବ,
ହୋଇପାରୁ ନିଜେ ନିଜର ମିସ୍ତିରୀ ଗଣକୁ ଯୋଡବା ଅସଲ ଭବ ।
ସଜାଡ ନିଜର ପରିବାର ଆଉ ଜନ ସଂପଦ ସଠିକ୍ କରି,
ଯୋଡ ହୋଇଗଲେ ସମ ବଣ୍ଟନ ବାଲି, ଉତ୍ପାଦନ ସିମେଣ୍ଟ ମାରି ।
ଗଣ ସେବା ପାଇଁ ତନ୍ତ୍ର ଅଛି ରହି ନିଜ ସେବା ଆଜି ତାଙ୍କ ମନ୍ତର,
ସେବା ନମିଳିଲେ ଗଣସେନା ରଜି ଚେଇଁଉଠି ଦେଶେ ବିଦ୍ରୋହ କର ।

ଓଡ଼ିଆ ପାଇକ ଅତିଇହ ଯାକ ମନେ ପକାଇ ତୁ ଉଠରେ ଚେଇଁ,
ରାଜ୍ୟର ସଂପଦ ଲୁଟି ଯେ ନେଉଛି ଧରି ତାର ତଣ୍ଟି ରଖ ଚିପାଇ ।
ନିଜ ସଂପଦକୁ ବ୍ୟବହାର କରି ଜୀବନ କିପରି ଚଳିବ ତୋର,
ବିଜ୍ଞାନ ଦେଉଛି କୌଶଳ ବତାଇ ତା ଶିଖି ଜୀବନ କରମ ଜର ।
ସମାଜେ ଜୀବନସଂଗ୍ରାମସମିତି ଯୁବକ ଯୁବତୀ ଶିଶୁଙ୍କୁ ନେଇ,
ଉତ୍ପାଦନ କର୍ମ ଯୋଜନା କରିବା ପ୍ରକୃତି କୋଳରୁ ଅମୃତ ଖାଇ ।
ଗଣତନ୍ତ୍ର ଘଣା ମରମ ଏପରି କହିଲି ବିସ୍ତାରି ବୁଝିଲି ଯେତେ,
ମନକୁ ପାଇଲେ ଲଗିପତ ଭାଇ ଜୀବନ ସଂଗ୍ରାମ ସମିତି ମତେ ।

—୦—

## ଭୋଟ

ଂ କବି ଭୂଷଣ ଶ୍ରୀ ସ୍ୱପ୍ନେଶ୍ୱର ଦାଶ

ଭୋଟ କାଳ ଆଉ ଦି ମାସ ମାସେ,
ଭଣ୍ଡ ଯତି କେତେ ମିଳିବେ ପାଶେ ।
ଭେକ ସାଜି ହୋଇ ଭୋଟ ଭିକାରୀ,
ଭୁଲାଇବେ ଇନ୍ଦ୍ର ଜାଲ ପ୍ରସାରି ।
ଭଟ ପରି ନିଜ ଗୁଣ ଗାଇବେ,
ଭଗବତ ତୁଳସୀ ଧରାଇବେ ।
ଭଣ୍ଡାମିରେ ଭୁଲି ନ ଯିବ କେବେ,
ଭରତ ହିତୈଷୀ ହୋଇବ ଯେବେ ।
ଭୋଟର ମୂଲ୍ୟ କରିବ ବିଚାର,
ଭଣ୍ଡଙ୍କୁ ନ ଦେବ ଭଣ୍ଡାର ଘର ।
ଭବିଚିନ୍ତି ଭଲ ଭେଲ ବାଛିବ,
ଭୁଲକଲେ ଅପଯଶ ପାଇବ ।
ଭଲ ଲୋକ କେତେ ଅଛନ୍ତି ଏଥେ
ଭଲ ସେ କରିବେ ବ୍ୟବସ୍ଥା ପଥେ ।

✱ ସମାପ୍ତ ✱